# କୋରାପୁଟିଆର ସ୍ୱରାଜ ସଂଗ୍ରାମ





ସତ୍ୟପ୍ରିୟ ଦାସ



# କୋରାପୁଟିଆର
# ସ୍ୱରାଜ
# ସଂଗ୍ରାମ

ସତ୍ୟପ୍ରିୟ ଦାସ

# କୋରାପୁଟିଆର ସ୍ୱରାଜ ସଂଗ୍ରାମ


ମୁଦ୍ରକ :—
ଜନସେବା ପ୍ରେସ
ନବରଙ୍ଗପୁର—୭୬୪୦୫୯ (ଓଡ଼ିଶା)

ପ୍ରକାଶକ : ଶାନ୍ତି ପ୍ରତିଷ୍ଠାନ
ଜନସଖା ଅଫିସ
ନବରଙ୍ଗପୁର, ଜିଲ୍ଲା କୋରାପୁଟ (ଓଡ଼ିଶା)

ପ୍ରଥମ ସଂସ୍କରଣ ୧୯୮୫

ମୂଲ୍ୟ—ଟ ୨୦-୦୦


KORAPUTIARO SWARAJ SANGRAM

by


**Satyopriyo Das**



Printed at Janaseva Press &
Published by Shanti Pratisthan,
Janasakha Office,
Nowrangpur-764059 [Orissa]

First Edition 1985

Cover designed
& Printed at
Janaseva Press

Price Rs. 20-00



କୋରାପୁଟ ଜିଲ୍ଲାର ବିଶିଷ୍ଟ ବିପ୍ଳବୀ ସ୍ୱାଧୀନତା
ସଂଗ୍ରାମୀ, 'ଜନସଖା'ର ସ୍ୱର୍ଗତ ସମ୍ପାଦକ ଲକ୍ଷ୍ମୀଚନ୍ଦ୍ର
ଦାସଙ୍କ ସ୍ମୃତିରେ ଉତ୍ସର୍ଗୀତ ।

# କୃତଜ୍ଞତା



ପୂଜ୍ୟ ପିତା ସ୍ୱର୍ଗତ ଲକ୍ଷ୍ମୀଚନ୍ଦ୍ର ଦାସଙ୍କ ଠାରୁ କୋରାପୁଟ ଜିଲ୍ଲା କଂଗ୍ରେସର କାର୍ଯ୍ୟ ଓ ସ୍ୱରାଜ ସଂଗ୍ରାମ ବିଷୟରେ ଅନେକ କଥା ଶୁଣି ଆସୁଥିଲି, ସେ ତ କଂଗ୍ରେସ ସଂଗଠନ ଓ ସ୍ୱାଧୀନତା ଆନ୍ଦୋଳନ ସହ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ଥିଲେ । ଏ ଜିଲ୍ଲାର ବହୁ ବିଶିଷ୍ଟ କଂଗ୍ରେସ ଲୋକଙ୍କ ସମ୍ପର୍କରେ ଆସିଥିବା ଯୋଗୁଁ ସେମାନଙ୍କ ଠାରୁ ଅନେକ କଥା ମଧ୍ୟ ଶୁଣିବାକୁ ସୁଯୋଗ ପାଇଥିଲି । ଘଟଣାଗୁଡ଼ିକ ଶୁଣିବା ପରେ ମନରେ ଅଭିମାନ ସହ ଦୁଃଖ ମଧ୍ୟ ଜାତ ହୋଇଥିଲା । ଏତେ ବଡ଼ ବଳିଦାନ ତ୍ୟାଗର ପରାକାଷ୍ଠା ପ୍ରଦର୍ଶନ କରିଥିବା କୋରାପୁଟିଆ କଂଗ୍ରେସର କାର୍ଯ୍ୟ ଓ ସ୍ୱରାଜ ସଂଗ୍ରାମ ଆଜି ପର୍ଯ୍ୟନ୍ତ ଲୁକାୟିତ ରହିଛି । ତେଣୁ ମୋର ଶକ୍ତିମନ୍ତେ କିଛି ଲେଖିବାକୁ ସିଦ୍ଧାନ୍ତ ନେଲି । ବାପାଙ୍କୁ ପଚାରିଲି । ତାଙ୍କର ଅନୁପ୍ରେରଣାରେ ଏହି ବହି ଖଣ୍ଡିକ ଲେଖିବାର ଭିତ୍ତି ପଡ଼ିଥିଲା ।

ବାପା ମୋତେ ସେ ସାଇତି ରଖିଥିବା ବହୁ ପୁରୁଣା କାଗଜପତ୍ର, ସମ୍ବାଦ ପତ୍ର କଟିଂ ଓ ତାଙ୍କ ଦ୍ୱାରା ଲିଖିତ ଜୀବନୀ ପଢ଼ିବାକୁ ଦେଲେ । ସେ ସବୁ ପଢ଼ି ବିସ୍ମିତ ହେବା ସଙ୍ଗେ ଉତ୍ସାହିତ ମଧ୍ୟ ହେଲି । କୋରାପୁଟିଆ ଇତିହାସ, କଂଗ୍ରେସ ସଙ୍ଗଠନ ଓ ସ୍ୱରାଜ ସଂଗ୍ରାମ ସମ୍ପର୍କରେ ପ୍ରାମାଣିକ ତଥ୍ୟ ପାଇଁ ବିଭିନ୍ନ ସ୍ଥାନରୁ ପୁସ୍ତକ, କାଗଜପତ୍ର ଆଦି ସଂଗ୍ରହ କଲି । ତଥ୍ୟ ସଂଗ୍ରହ ଓ ପାଣ୍ଡୁଲିପି ପ୍ରସ୍ତୁତ ହେବାରେ ଦୁଇ ବର୍ଷ ଲାଗିଗଲା ।

କୋରାପୁଟ ଜିଲ୍ଲାର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ କଂଗ୍ରେସର ପ୍ରତିଷ୍ଠାତା ସ୍ୱର୍ଗତ ରାଧାକୃଷ୍ଣ ବିଶ୍ୱାସରାୟଙ୍କ ଲିଖିତ ଅନେକ କାଗଜପତ୍ର ପାଇଲି । ସ୍ୱାଧୀନତା ସଂଗ୍ରାମୀ ପୂଜ୍ୟ ବିଶ୍ୱନାଥ ପଟ୍ଟନାୟକ ଓ ମହମ୍ମଦ ବାଜୀଙ୍କ ଠାରୁ କେତେକ ପୁରୁଣା ତଥ୍ୟ ସଂଗ୍ରହ କରିଥିଲି । ବିଶାଖପାଟଣା ଗେଜେଟିଅର, ଆର. ସି. ଏସ ବେଲଙ୍କ କୋରାପୁଟ ଗେଜେଟିଅର, ଦୈନିକ 'ନ୍ୟୁ ଓଡ଼ିଶା', ସମାଜ, ସଂଗ୍ରାମୀଙ୍କ ବିରୁଦ୍ଧରେ ହୋଇଥିବା ମକଦ୍ଦମାଗୁଡ଼ିକର କେଶ ରେକର୍ଡ ସମେତ ଅନ୍ୟାନ୍ୟ କେତେକ ଗୁରୁତ୍ୱପୂର୍ଣ୍ଣ ଗୁପ୍ତ ନଥିପତ୍ର ମୋର ଏହି ବହିଟି ଲେଖିବାରେ ବେଶ ସହାୟକ ହୋଇଛି । ଓଡ଼ିଶାର ପ୍ରତିଷ୍ଠିତ ସାହିତ୍ୟିକ ଶ୍ରୀ କୁମାର ମହାନ୍ତି ମୋତେ ବିଭିନ୍ନ ପ୍ରକାର ସାହାଯ୍ୟ ଓ ସହଯୋଗ ଦେଇଛନ୍ତି ।

ବିଶିଷ୍ଟ ପୂଜ୍ୟ ଲୋକଙ୍କ ସ୍ନେହ, ସହଯୋଗ ଓ ଆଶୀର୍ବାଦରେ ମୋ ଭଳି ଜଣେ ଅଳ୍ପ ବୟସ୍କ ଯୁବକ ଆଜ 'କୋରାପୁଟିଆ'ର ସ୍ୱରାଜ ସଂଗ୍ରାମ' ବହିଟି ଆପଣମାନଙ୍କ ହସ୍ତରେ ଉପସ୍ଥାପିତ କରିପାରିଛି ଏବଂ ଏହି ଅବସରରେ ସେମାନଙ୍କୁ କୃତଜ୍ଞତା ଜଣାଉଛି ।

'ଜନସଖା'
ନବରଙ୍ଗପୁର

**ସତ୍ୟପ୍ରିୟ ଦାସ**
୧୬-୧୦-୮[illegible]

ରାମାୟଣ ଯୁଗରେ ଶ୍ରେଷ୍ଠରମାନଙ୍କୁ କୁହାଯାଉଥିଲା— ରାଜକର୍ତ୍ତାରଃ' ।

ରାମଚନ୍ଦ୍ରଙ୍କୁ ରାଜ ସିଂହାସନରେ ଅଭିଷେକ କରିବାକୁ ଦଶରଥ ଯେଉଁ ଜନ ସମ୍ମତି ପ୍ରାର୍ଥନା କରିଥିଲେ, ସେତେବେଳେ ସେ ସ୍ପଷ୍ଟ କହି ଦେଇଥିଲେ—"ମୋର ପ୍ରୀତି ବା ହିତ ଚିନ୍ତା ବା ଅନ୍ୟ କୌଣସି ପ୍ରକାର ମଧ୍ୟସ୍ଥ ଚିନ୍ତା ଆପଣମାନଙ୍କ ବିଗ୍ଭରରେ ନ ପଶୁ ।"

( ଅଯୋଧ୍ୟା କାଣ୍ଡ ୧-୨-୧୬ )

ଗାନ୍ଧୀଜୀଙ୍କ ରାମରାଜ୍ୟ କଳ୍ପନାରୁ ରାମାୟଣ ଯୁଗର ଏଭଳି ଇଙ୍ଗିତ । ମହାତ୍ମା ଗାନ୍ଧୀ 'ରାମରାଜ୍ୟ ବା 'ହିନ୍ଦ ସ୍ୱରାଜ'ର ଯେଉଁ କଳ୍ପନା କରିଥିଲେ ତାର ସଜ୍ଞା ନିରୂପଣ କରିବାକୁ ଯାଇ କହିଥିଲେ—

"It is swaraj when we learn to rule ourselves Such swaraj has to be experimented by each one for himself. What others get for me is not swaraj but foreign rule."

ଅର୍ଥାତ ଆମେ ଯେତେବେଳେ ନିଜକୁ ଶାସନ କରି ଶିଖିବା ସେତେବେଳେ ହିଁ ପ୍ରକୃତ ସ୍ୱରାଜ ଆସିବ । ଏହି ସ୍ୱରାଜ ପ୍ରତ୍ୟେକେ ନିଜ ପାଇଁ ନିଜେ ଅନୁଭବ କରିବେ । ଅନ୍ୟ ଆମକୁ କିଛି 'ସ୍ୱାଧୀନତା' ଆଣିଦେଲେ ତାହା ସ୍ୱରାଜ ନୁହେଁ ବରଂ ବାହ୍ୟ ଶାସନ ।

୧୯୦୯ ମସିହାରେ ଗାନ୍ଧୀ ଯେତେବେଳେ ହିନ୍ଦ ସ୍ୱରାଜ' ଲେଖିଥିଲେ ସେତେବେଳେ ସ୍ୱରାଜର ମୂଳଭିତ୍ତିଗୁଡ଼ିକ ଲିପିବଦ୍ଧ କରିଥିଲେ, ଏବଂ ତତ୍କାଳୀନ ଇଟାଲୀ ଓ ଭାରତର ଅବସ୍ଥା ବିଷୟରେ ଏକତୁଳନାତ୍ମକ ବାଖ୍ୟା କରିବାକୁ ଯାଇ ସୂଚାଇଥିଲେ—

"ଇଟାଲୀର ବାସିନ୍ଦା ଶାସନ କରୁଛନ୍ତି ବୋଲି ଇଟାଲୀର ପ୍ରଜା ସୁଖୀ, ଏ କଥା ଯଦି ଆପଣ ବିଶ୍ୱାସ କରୁଥିବେ, ତେବେ ଆପଣ ଅନ୍ଧାରେ ଅଣ୍ଡାଳି ହେଉଛନ୍ତି ମ୍ୟାଜିନୀ ସ୍ପଷ୍ଟ ଭାବରେ କହି ଦେଇଛନ୍ତି ଯେ ଇଟାଲୀ ସ୍ୱାଧୀନ ହୋଇନାହିଁ । ଭିକ୍ଟର ଇମ୍ମାନୁୟେଲ୍ ଏ କଥାର ଗୋଟିଏ ପ୍ରକାର ଅର୍ଥ କରିଛନ୍ତି ଓ ମ୍ୟାଜିନୀ ଅନ୍ୟ ପ୍ରକାର

ଅର୍ଥ କରନ୍ତି । ଇମ୍ମାନୁଏଲ, କାଭୁର ଓ ଏପରିକି ଗ୍ୟାରିବାଲଡ଼ିଙ୍କ ମ...
ବୋଇଲେ ଇଟାଲୀର ରାଜା ଇମ୍ମାନୁଏଲ ଓ ତାଙ୍କ ଶାଖ ଲୋକ । ମ୍ୟାଜିନିଙ୍କ ବିଚାର ଅନୁସାରେ ଇଟାଲୀର ଅର୍ଥ ହେଲା ଇଟାଲୀର ସମସ୍ତ ଅଧିବାସୀ, ଇଟାଲୀର କୃଷୀକୂଳ । ଇମ୍ମାନୁଏଲ ସେହି ପ୍ରଜାଙ୍କର ରାଜର ମାତ୍ର । ମ୍ୟାଜିନିଙ୍କର କଳ୍ପନାର ଇଟାଲୀ ଏ ପର୍ଯ୍ୟନ୍ତ ଗୋଲାମ ହୋଇ ରହିଛି । ଇଟାଲୀର ଶ୍ରମିକକୂଳ ବର୍ତ୍ତମାନ ମଧ୍ୟ ଦୁଃଖୀ । ସେମାନେ ନରହତ୍ୟା କରୁଛନ୍ତି, ବିଦ୍ରୋହରେ ଉଠୁଛନ୍ତି ଏବଂ ସେଠାରେ ବିଦ୍ରୋହ ହେବାର ଅଶଙ୍କା ସର୍ବଦା ରହିଛି । ଅଷ୍ଟ୍ରିଆର ସୈନ୍ୟ ଘୁଞ୍ଚିବା ପରେ ଇଟାଲୀର କ ଆଗି ବୃଦ୍ଧି ଆ ଲାଭ ହେଲା ? ଲାଭ କାମକୁ ମାତ୍ର ହୋଇଛି । ଯେଉଁ ଶାସନ ସଂସ୍ଥାର ପାଇଁ ଯୁଦ୍ଧ କରିଥିଲେ, ତାହା ଏ ପର୍ଯ୍ୟନ୍ତ ହେଲାନାହିଁ । ପ୍ରଜାଙ୍କ ଦଶା ସୁଧରିଲା ନାହିଁ ।

ଭାରତର ଏହିପରି ଦଶା ଘଟୁ, ତାହା ଆପଣ କଦାପି ଇଚ୍ଛା କରୁ ନଥିବେ । ମୋର ବିଶ୍ୱାସ ଭାରତର କୋଟି କୋଟି ଲୋକଙ୍କୁ ସୁଖୀ କରିବା ହିଁ ଆପଣଙ୍କର ଉଦ୍ଦେଶ୍ୟ ଆପଣ (ବା ମୁଁ) ଶାସନ-କ୍ଷମତା ହାତକୁ ନେବା ଆପଣଙ୍କର ଉଦ୍ଦେଶ୍ୟ ନୁହେଁ । ତାହାହେଲେ ଆମକୁ ଗୋଟିଏ କଥା ଚିନ୍ତା କରିବାକୁ ହେବ । ସେ କଥାଟି ହେଉଛି, ଭାରତର କୋଟି କୋଟି ପ୍ରଜା କିପରି ସ୍ୱାଧୀନ ହେବେ । ଗଡ଼ଜାତ ରାଜାମାନଙ୍କ ଶାସନରେ ପ୍ରଜାମାନେ ଯେ ନିଷ୍ପେଷିତ ହେଉଛନ୍ତି । ତାହା ଆପଣ ସ୍ୱୀକାର କରିବେ । ରାଜାମାନେ ନିର୍ଦ୍ଦୟଭାବରେ ପ୍ରଜାଙ୍କ ଉପରେ ଅତ୍ୟାଚାର କରୁଛନ୍ତି । ସେ ଅତ୍ୟାଚାର ଇଂରେଜମାନଙ୍କ ଠାରୁ ଅଧିକ । ଆପଣ ସ୍ୱାଧୀନ ଭାରତବର୍ଷରେ ସେହିପରି ଅତ୍ୟାଚାର ରହିଥିବେ, ତେବେ ଆମେ ଦୁହେଁ କେବେ ହେଁ ଏକମତ ହୋଇ ପାରିବା ନାହିଁ । ମୋର ସ୍ୱଦେଶପ୍ରୀତି ମୋତେ କେବେ ହେଁ ଏହା ଶିଖାଇ ନାହିଁ ଯେ ଇଂରେଜମାନେ ଚାଲିଯାଆନ୍ତୁ ଏବଂ ଗଡ଼ଜାତରେ ପ୍ରଜାମାନେ ସେଠା ଭାରତୀୟ ରାଜାଙ୍କ ଦ୍ୱାରା ଯେପରି ନିଷ୍ପେଷିତ ହେଉଛନ୍ତି, ଭାରତୀୟ ପ୍ରଜାମାନେ ସେହିପରି ନିଷ୍ପେଷିତ ହେଉନ୍ତୁ । ମୋର ବଳ ପାଇଲେ ମୁଁ ଇଂରେଜମାନଙ୍କ ଅତ୍ୟାଚାରକୁ ଯେପରି ବିରୋଧ କରୁଛି, ସେହିପରି ଗଡ଼ଜାତ ରାଜାଙ୍କ ଅତ୍ୟାଚାର ବିରୋଧରେ ସଂଗ୍ରାମ କରନ୍ତି । ସ୍ୱଦେଶପ୍ରୀତି ବୋଇଲେ ମୁଁ ବୁଝେ ଯେ ସମଗ୍ର ଜନତାଙ୍କ ସୁଖ ବା କଲ୍ୟାଣ ।"

ଏହି ବକ୍ତୃତାର ଧାରାରେ ଅନୁପ୍ରାଣିତ ହୋଇ ସାରା ଭାରତବର୍ଷରେ ଏକ ନବଜାଗରଣ ଦେଖାଦେଇଥିଲା ଏବଂ 'କୋରାପୁଟିଆର ସ୍ୱରାଜ-ସଂଗ୍ରାମ'ର ମୂଳଭିତ୍ତି ପ୍ରତିଷ୍ଠିତ ହୋଇଥିଲା । ଆଜିର ବିଡମ୍ବିତ ଗଣତାନ୍ତ୍ରିକ ମୂଲ୍ୟ-ବୋଧ ସହ ତୁଳନା କରି କୋରାପୁଟିଆଙ୍କ ସ୍ୱରାଜ ସଂଗ୍ରାମର ଇତିହାସର ସଙ୍କଳନ କରିବାର ମୁଁ ପ୍ରୟାସ କରୁଛି— ଏଇଥିପାଇଁ ଆଉ କିଛି ବର୍ଷ ପରେ ଆମ ବୁଢ଼ା-ବୁଢ଼ୀଙ୍କ ସମସ୍ତ ପ୍ରଚେଷ୍ଟା ଓ ତ୍ୟାଗ ଲୋକଲୋଚନରୁ ଅବଲୁପ୍ତ ହେବା ପୂର୍ବରୁ ଏହା ପୁସ୍ତକାକାରରେ କମ୍‌ସେ କମ୍ ବଞ୍ଚିଥାଉ ।

କୋରାପୁଟ ଜିଲ୍ଲାର ପ୍ରାଚୀନ ଜାତିଙ୍କ ଇତିହାସ ହିଁ ଏହାର ଇତିହାସ । କୋରାପୁଟ ଜିଲ୍ଲାର ପ୍ରାଚୀନ ସଭ୍ୟତା ଓ ଶାସନ ସମ୍ବନ୍ଧରେ ବିସ୍ତୃତ ବିବରଣୀ ସଂଗ୍ରହ କରିବା କଷ୍ଟକର ବ୍ୟାପାର । ତେବେ ସର୍ବ ପ୍ରଥମେ ଏହି ଜିଲ୍ଲାରେ କୋଲାରିଆନ ବା ମୁଣ୍ଡା-ଜାତିର ଲୋକେ ବସତି ସ୍ଥାପନ କରିଥିଲେ । କ୍ରମେ ଦ୍ରାବିଡ଼ ସଭ୍ୟତାର ଲୋକଙ୍କ ଏଠାକୁ ଅନୁପ୍ରବେଶ ଘଟିଥିଲା । ପ୍ରାଚୀନ ସଭ୍ୟତାର ମୂକସାକ୍ଷୀ ରୂପେ କେବଳ ଦୁର୍ଗ ଅରଣ୍ୟ, ପର୍ବତମାଳା ଏବଂ ଐତିହାସିକ ଗବେଷଣା ପାଇଁ କେତେକ ଭଗ୍ନ ମନ୍ଦିର ଓ ଶିଳାଲିପି ଅଦ୍ୟାବଧି ବିଦ୍ୟମାନ । କିନ୍ତୁ ଆରଣ୍ୟ ଆଉ ଘଞ୍ଚ ହୋଇ ବର୍ତ୍ତମାନ ରହିନାହିଁ ।

ଉମରକୋଟ ନିକଟସ୍ଥ ପଡ଼ାଗଡ଼ ଠାରେ ସଂସ୍କୃତ ଭାଷା ସହ ସାମଞ୍ଜସ୍ୟ ଥିବା ଏକ ଶିଳାଲିପି ରହିଛି । ଏଥିରେ ଚତୁର୍ଥ ଶତାବ୍ଦୀରେ ନଳ ପରିବାର ଭବଦତ୍ତ ନାମକ ଜଣେ ରାଜାଙ୍କ ରାଜ୍ୟ ଫେରି ପାଇବା ବିଷୟ ଖୋଦିତ ହୋଇଛି । ଭବଦତ୍ତ ପୂଜା ପାଇଁ ହରିହର ମନ୍ଦିର ପ୍ରତିଷ୍ଠା କରିଥିବା ଉଲ୍ଲେଖ ରହିଛି । ପଡ଼ାଗଡ଼ଠାରୁ ଆନତି ଦୂରରେ ଥିବା ଜଙ୍ଗଲରେ ନାଗରୀ ଲିପିର ୧୦ମ ଶତାବ୍ଦୀର ଅନ୍ୟ ଏକ ଶିଳାଲିପି ରହିଛି । ଏଥିରେ ପାପଡ଼ାହାଣ୍ଡି ନାମକ ଏକ ଗ୍ରାମ ଦାନ ବିଷୟରେ ଖୋଦିତ ହୋଇଛି । ସେମିଳିଗୁଡ଼ା-ନନ୍ଦପୁର ରାସ୍ତାରେ ଭଗ୍ନ ମନ୍ଦିର ବିଦ୍ୟମାନ । ଏହାକୁ ପୂର୍ବରୁ ଜୈନ ମନ୍ଦିର ବୋଲି କୁହାଯାଉଥିଲା । କିନ୍ତୁ ବର୍ତ୍ତମାନ କେତେକ ଏହା ବୌଦ୍ଧ ମନ୍ଦିର ବୋଲି ମତ ଦେଉଛନ୍ତି । ଆନ୍ଧ୍ର ପ୍ରଦେଶର ସିମାଞ୍ଚଳ ଓ କୁରୁପମର କେତେକ ଶିଳାରେ ଜିଲ୍ଲାର କେତେକ ରାଜାଙ୍କ ସମ୍ବନ୍ଧରେ କିଞ୍ଚିତ ସୂଚନା ଦିଆଯାଇଅଛି ।

୧୭୬୮ ମସିହାରେ ବିଜୟନଗରମର ରାଜା ବିଜୟ ରାମାରାଜୁ ଜୟପୁର ରାଜ୍ୟର ଜାଗିର ନବୀକରଣ ପାଇଁ ମାଡ୍ରାସ ସରକାରଙ୍କଠାରେ ଆବେଦନ କରିଥିଲେ । ରାମାରାଜୁ ତାଙ୍କ ଆବେଦନ ପତ୍ରରେ ଡେକାନ ସୁବାଦାର ସଲାବତ ଜଙ୍ଗ ଦେଇଥିବା ସନନ୍ଦ ପ୍ରସଙ୍ଗ ଉତ୍ଥାପନ କରିଥିଲେ । ଏହି ସନନ୍ଦରେ ବିଜୟ ରାମାରାଜୁଙ୍କୁ ଜଙ୍ଗଲ ଓ ପାର୍ବତ୍ୟ ଅଞ୍ଚଳର ଜମିଦାର ଭାବେ ସମ୍ବୋଧିତ କରାଯାଇଥିଲା ଏବଂ କାଶୀପୁର ଓ ନନ୍ଦପୁର ରାଜ୍ୟରୁ ୨୪ ହଜାର ଟଙ୍କ ବାର୍ଷିକ ରାଜସ୍ୱ ପାଇବାର ଅଧିକାର ପାଇଥିବା ଉଲ୍ଲେଖ ଥିଲା । ମାଡ୍ରାସ ସରକାର ବିଜୟ ରାମାରାଜୁଙ୍କ ଆବେଦନକୁ ଗ୍ରହଣ କରି ନେଇଥିଲେ ଏବଂ ଜାଗିର ପ୍ରଦାନ କରିଥିଲେ ।

ଏହା ସ୍ଥାନୀୟ ଜମିଦାରମାନଙ୍କ ମନରେ କ୍ଷୋଭ ଅସନ୍ତୋଷ ସୃଷ୍ଟି କରିଥିଲା । ବିଜୟନଗରମ୍ ରାଜାଙ୍କ ବିରୋଧରେ ସମସ୍ତେ ଏକତ୍ରିତ ହୋଇ ବିଦ୍ରୋହ କାର୍ଯ୍ୟାନୁଷ୍ଠାନ ପାଇଁ ନିଷ୍ପତ୍ତି ନେଇଥିଲେ । ଏହା ପରିପ୍ରେକ୍ଷୀରେ ଇଷ୍ଟଇଣ୍ଡିଆ କମ୍ପାନୀର ଅଧିକାରୀଙ୍କୁ ଆହ୍ୱାନ କରିଥିଲେ । ବିଜୟନଗରମ୍ ରାଜା କମ୍ପାନୀର ସୈନ୍ୟଙ୍କ ସାହାଯ୍ୟରେ ସ୍ଥାନୀୟ ଜମିଦାରଙ୍କ ଅଭିଯାନକୁ ମୁକାବିଲା କରିବାକୁ ଚାହାଁଥିଲେ । ଏହି ଗଣ୍ଡଗୋଳିଆ ପରିସ୍ଥିତିରେ ହିଁ ମଲ୍ଲଅଞ୍ଚଳଟି ବ୍ରିଟିଶ ହାତରେ ସମର୍ପିତ ହୋଇଥିଲା । ସ୍ଥାନୀୟ ଜମିଦାରଙ୍କୁ ଦମନ କରିବାକୁ କେପଟାନ୍ ମାଥ୍ୟୁସଙ୍କ ନେତୃତ୍ୱରେ ବ୍ରିଟିଶ ସେନା ଅଗ୍ରସର ହୋଇଥିଲେ । ୧୭୬୫ ମସିହା ଜାନୁୟାରୀ ୧୫ ତାରିଖ ସୁଦ୍ଧା ସେମାନେ ରାୟଗଡ଼ାକୁ ଦଖଲ କରି ନେଇଥିଲେ ଏବଂ ଫେବୃୟାରୀ ୧୪ ତାରିଖରେ ସେମାନେ ଜୟପୁର ନିକଟସ୍ଥ ହୋଇ ଯାଇଥିଲେ । କ୍ରମେ ଜୟପୁର ସେମାନଙ୍କ ଅକ୍ତିଆରକୁ ଆସି ଯାଇଥିଲା । ଇଂରେଜ ପକ୍ଷରେ କେପଟାନ୍ ମାଥ୍ୟୁସ ସର୍ବପ୍ରଥମେ ଜୟପୁରରେ ପାଦ ଦେଇଥିଲେ ।

ଜୟପୁର ଜମିଦାରୀ ଇଂରେଜଙ୍କ ଅକ୍ତିଆରକୁ ଆସିଯିବା ପରେ ଏହାକୁ ବିଜୟନଗରମ ରାଜାଙ୍କୁ ସମର୍ପି ଦିଆଯାଇଥିଲା । କିନ୍ତୁ କ୍ରମେ ଏହା ବିରୁଦ୍ଧରେ ଜୟପୁର ପ୍ରଜା ସ୍ୱରଉତ୍ତୋଳନ କରିଥିଲେ । ପ୍ରଜାଙ୍କ ପ୍ରତିବାଦ ଓ ବିଶୃଙ୍ଖଳା ବୃଦ୍ଧି ପାଇବାରୁ ବିତାଡ଼ିତ ଜମିଦାରଙ୍କୁ ବାର୍ଷିକ ୪୦ ହଜାର ଟଙ୍କା ରାଜସ୍ୱରେ ପୁନର୍ବାର ଜମିଦାରୀ ଦିଆଯାଇଥିଲା ।

୧୭୮୪ ମସିହାରେ ମାନ୍ଦ୍ରାସ ସର୍କାରଙ୍କ ସାର୍କ୍ୟୁଟ କମିଟି ଜୟପୁରକୁ ସ୍ୱତନ୍ତ୍ର ଜମିଦାର କରିବାକୁ ପ୍ରସ୍ତାବଦେଇ ୩୫ ହଜାର ଟଙ୍କା ପେଶକଶ ଆଦାୟ କରିବାକୁ ସୁପାରିଶ କରିଥିଲେ । କିନ୍ତୁ ଏହି ପ୍ରସ୍ତାବଟି ତତ୍‌କ୍ଷଣାତ କାର୍ଯ୍ୟକାରୀ ହୋଇ ନଥିଲା । ଇତି ମଧ୍ୟରେ ବିଜୟନଗରମ ରାଜା ଓ ଇଂରେଜ ମଧ୍ୟରେ ମତାନ୍ତର ତଥା ଗଣ୍ଡଗୋଳ ଉପୁଜିଥିଲା । ୧୭୯୪ ମସିହାରେ ଲେଫଟେନାଣ୍ଟ କର୍ଣ୍ଣେଲ ପ୍ରେଣ୍ଡରଗାଷ୍ଟ ବିଜୟନଗରମ ରାଜାଙ୍କୁ ଆକ୍ରମଣ କରିଥିଲେ ଏବଂ ରାଜା ପରାସ୍ତ ହୋଇଥିଲେ । ଏହି ସମୟରେ ଜୟପୁର ଜମିଦାର ବିଜୟନଗରମ ରାଜାଙ୍କୁ ସାହାଯ୍ୟ କରି ନଥିଲେ । ତେଣୁ ଇଷ୍ଟଇଣ୍ଡିଆ କମ୍ପାନୀ ଜୟପୁର ରାଜାଙ୍କ ଉପରେ ସନ୍ତୁଷ୍ଟ ହୋଇ ଏକ ସ୍ଥାୟୀ ସନନ୍ଦ ଦ୍ୱାରା ଜମିଦାରୀ ପ୍ରଦାନ କରିଥିଲେ ଏବଂ ବାର୍ଷିକ ପେଶକଶକୁ ୨୫ ହଜାର ଟଙ୍କାକୁ ହ୍ରାସ କରି ଦେଇଥିଲେ ।

୧୮୦୨ ମସିହାରେ ବିଶାଖାପାଟଣା ଜିଲ୍ଲାରେ 'ସ୍ଥାୟୀ ବନ୍ଦୋବସ୍ତ' ଲାଗୁ କରାଯାଇଥିଲା । ଜୟପୁର ଜମିଦାରୀ ରାମଚନ୍ଦ୍ର ଦେଓଙ୍କୁ ଦିଆଯାଇ ବାର୍ଷିକ ୧୬ ହଜାର ଟଙ୍କା ପେଶକଶ ଦେବାକୁ ନିର୍ଦ୍ଧାରିତ ହୋଇଥିଲା ।

୧୮୬୫ ମସିହାରେ ଜୟପୁର ଜମିଦାରୀରେ ବିଶୃଙ୍ଖଳା ଓ ଅରାଜକତା ଦେଖା ଦେଇଥିଲା । ମାନ୍ଦ୍ରାଜ ସରକାର ପାର୍ବତ୍ୟ ଅଞ୍ଚଳର ପୋଲିସ ଓ ରାଜସ୍ୱ ଦାୟିତ୍ୱ ନିଜହାତକୁ ନେବାକୁ ଭିଶାଖପାଟଣା ଜିଲ୍ଲା ଏଜେଣ୍ଟଙ୍କୁ ନିର୍ଦ୍ଦେଶ ଦେଇଥିଲେ । କିନ୍ତୁ ଏହାକୁ ଲର୍ଡ଼ ଡ଼େଲହାଉସି ପସନ୍ଦ କରି ନଥିଲେ । କାରଣ ରମ୍ପୁବିଦ୍ରୋହ ଭଳି ଏହି ପାର୍ବତ୍ୟ ଅଞ୍ଚଳରେ ମଧ୍ୟ ଲୋକ ବ୍ରିଟିସ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରି ପାରନ୍ତି ବୋଲି ତାଙ୍କର ଆଶଙ୍କା ଥିଲା । କିନ୍ତୁ ପରେ ପ୍ରତ୍ୟକ୍ଷ ଶାସନ ଗ୍ରହଣ ନେଇ କାର୍ଯ୍ୟାନୁଷ୍ଠାନ କରାଯାଇଥିଲା । ୧୮୬୩ ମସିହା ଜାନୁୟାରୀ ମାସରେ ଭିଶାଖପାଟଣା ଜିଲ୍ଲା ଏଜେଣ୍ଟଙ୍କ ମି. ଫେନେ ଜୟପୁର ପାଇଁ ଜଣେ ସହକାରୀ ଏଜେଣ୍ଟ ଓ ସହକାରୀ ପୋଲିସ ସୁପରିନଟେଣ୍ଡେଣ୍ଟଙ୍କୁ ନିଯୁକ୍ତି କଲେ । ଲେଫଟେନାଣ୍ଟ ଜେ, ଏମ, ସ୍ମିଥ ସହକାରୀ ଏଜେଣ୍ଟ ଏବଂ କେପଟେନ ଟାଲ ବୋଇଶ ସହକାରୀ ପୋଲିସ ସୁପରିନଟେଣ୍ଡେଣ୍ଟ ଭାବେ ଅବସ୍ଥାପିତ ହେଲେ ।

ବ୍ରିଟିଶର ପ୍ରତ୍ୟକ୍ଷ ଶାସନ କାର୍ଯ୍ୟକାରୀ ହେବାପରେ ଏହି ପାର୍ବତ୍ୟ ଅଞ୍ଚଳ ଲୋକଙ୍କ ପକ୍ଷରୁ କେତେକ ବିଦ୍ରୋହାତ୍ମକ କାର୍ଯ୍ୟ ସଂଗଠିତ ହୋଇଥିଲା ଏବଂ ଏହା 'ଫିତୁରୀ' ଭାବେ ପରିଚିତ । ୧୮୬୪ ମସିହା ଜୁଲାଇ ମାସରେ ଖୁଣ୍ଟିପୁର ତାଲୁକାରେ ପୁଟାସିଙ୍ଗ ପୋଲିସ ଷ୍ଟେସନ ଭାବେ ସଭର କାଉର ଜଣେ ମୁଖିଆଙ୍କୁ ଗିରଫ କରିଥିଲେ । ଏହି ଗିରଫର ପ୍ରତିବାଦରେ ସଉରମାନେ ଥାନା ଉପରେ ଚଢ଼ାଉ କରିଥିଲେ ଏବଂ ଥାନାକୁ ସଂପୂର୍ଣ୍ଣ ରୂପେ ପୋଡ଼ି ଦେଇଥିଲେ । ଥାନା ଅଫିସରଙ୍କ ସମେତ ଷୋହଳଜଣ ସିପାହିଙ୍କୁ ହତ୍ୟା କରିଥିଲେ । ଏହି ଘଟଣାଟି ସେତେବେଳେ ବ୍ରିଟିଶ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲା ।

୧୮୭୯ ମସିହାରେ ଇଷ୍ଟ ଗୋଦାବରୀ ଜିଲ୍ଲାର ରମ୍ପା ଅଞ୍ଚଳରେ କୋୟା ମାନଙ୍କ ବିଦ୍ରୋହ ଘଟିଥିଲା । ଏହା ମାଲକାନଗିରି ଅଞ୍ଚଳକୁ ମଧ୍ୟ ବ୍ୟାପିଥିଲା । ପୋଲିସର ଅନ୍ୟାୟ ଓ ଦମନ ମୂଳକ କାର୍ଯ୍ୟର ପ୍ରତିବାଦ କରି ଏହି ବିଦ୍ରୋହର ସୂତ୍ରପାତ ହୋଇଥିଲା । ପଡ଼ିଆ ଥାନାର ପୋଲିସ ଇନସପେକ୍ଟର ସମେତ ଛ'ଜଣ ସିପାହିଙ୍କୁ ହତ୍ୟା କରାଯାଇଥିଲା । କୋୟାମାନଙ୍କ ବିଦ୍ରୋହ ଦମନ କରିବାକୁ ହାଇଦ୍ରାବାଦ କଣ୍ଟିଜେଣ୍ଟରୁ କର୍ଣ୍ଣେଲ ମାକ୍ୟୁଭିତଙ୍କ ନେତୃତ୍ୱରେ ସେନା ବାହିନୀ ଆସି ମୋଟୁ ଠାରେ ଛାଉଣୀ ପକାଇଥିଲେ ।

ଏ ଅଞ୍ଚଳରେ ବ୍ରିଟିଶ ବିରୁଦ୍ଧରେ ହୋଇଥିବା ଫିତୁରୀ ମଧ୍ୟରୁ ଆଲୁରୀ ସୀତାରାମ ରାଜୁଙ୍କ ନେତୃତ୍ୱରେ ହୋଇଥିବା ବିଦ୍ରୋହ ବିଶେଷ ଉଲ୍ଲେଖ ଯୋଗ୍ୟ । ଏହା ୧୯୨୨ ରୁ ଆରମ୍ଭ ହୋଇ ୧୯୨୪ ପର୍ଯ୍ୟନ୍ତ ଚାଲିଥିଲା । ୧୯୨୩ ରେ ସୀତାରାମ ରାଜୁ ମାଲକାନଗିରି ଥାନାକୁ ଆସି ଅସ୍ତ୍ର ଶସ୍ତ୍ର ଲୁଟ କରିଥିଲେ । ଏହା ସେତେବେଳେ ବ୍ରିଟିଶର ମୁଣ୍ଡବ୍ୟଥା କରିଥିଲା । ୧୯୩୨ ସାଲରେ ନାରାୟଣପାଟଣା ଅଞ୍ଚଳର ପାଇକ ମାନେ ମଧ୍ୟ ବିଦ୍ରୋହ କରିଥିଲେ ।

ଏପ୍ରିଲ ପହିଲା ୧୯୩୬ ସାଲରେ କୋରାପୁଟ ଜିଲ୍ଲା ଗଠିତ ହେବା ସମୟରେ କୋରାପୁଟିଆର ସାମାଜିକ ସଙ୍ଗଠନ ପ୍ରାଚୀନଯୁଗୀୟ ଥିଲା । ଜିଲ୍ଲା ଭାବେ ଗଠିତ ହେବା ପରେ ୧୯୪୧ ମସିହା ଜନଗଣନା ଅନୁଯାୟୀ କୋରାପୁଟ ଜିଲ୍ଲାର ଜନସଂଖ୍ୟା ୧୧,୨୭,୮୬୨ ଥିଲା ଏବଂ ଏହା ମଧ୍ୟରୁ ସହରବାସୀଙ୍କ ସଂଖ୍ୟା ଥିଲା ୧୯୯୨୦- ସମୁଦାୟ ଜନ ସଂଖ୍ୟାର ମାତ୍ର ଶତକଡ଼ା ଦୁଇଭାଗ । ସହରାଞ୍ଚଳକୁ ବାଦଦେଲେ ଅବଶିଷ୍ଟ ଗ୍ରାମାଞ୍ଚଳରେ ଅର୍ଦ୍ଧନଗ୍ନ ଅର୍ଦ୍ଧ ବୁଭୁକ୍ଷ କୋରାପୁଟିଆ ଆଦିମ ଅଧିବାସୀଙ୍କ ବାସସ୍ଥଳୀ ଥିଲା । ସେମାନଙ୍କ ମଧ୍ୟରୁ କନ୍ଧ ଓ କୋୟା ଜାତିର ଲୋକେ ଯାଯାବର ଜୀବନ ଯାପନ କରୁଥିଲେ । ଜୟପୁର, ନବରଙ୍ଗପୁର, ମାଲକାନଗିରି, କୋରାପୁଟ ଓ ପଟ୍ଟାଙ୍ଗୀ ତାଲୁକାରେ ଜମିକୁ କୃଷି ଜମିରେ ପରିଣତ କରିବା ପରେ ସମ୍ପୃକ୍ତ ଅଞ୍ଚଳଗୁଡ଼ିକର ଲୋକ ସଂଖ୍ୟା କ୍ଷୀପ୍ର ଗତିରେ ବୃଦ୍ଧି ପାଇଥିଲା । ୧୯୩୨ ମସିହାରେ ରାୟପୁର—ବିଜୟନଗରମ ରେଲରାସ୍ତା ଖୋଲିବା ଯୋଗୁଁ ରାୟଗଡ଼ ଅଞ୍ଚଳର ଲୋକ ସଂଖ୍ୟା ବୃଦ୍ଧି ପାଇଥିଲା । କିନ୍ତୁ ଏହି ଲୋକ ସଂଖ୍ୟା ବୃଦ୍ଧି କୋରାପୁଟ ଜିଲ୍ଲା ଅଧିବାସୀଙ୍କ ଜନ୍ମହାର ବୃଦ୍ଧି ଯୋଗୁଁ ଘଟି ନଥିଲା । ସୀମାନ୍ତରେ ଥିବା ଜିଲ୍ଲାଗୁଡ଼ିକରୁ ଅନୁପ୍ରବେଶ ଯୋଗୁଁ ଜନସଂଖ୍ୟା ବୃଦ୍ଧି ପାଇଥିଲା । ସେତେବେଳେ କୋରାପୁଟ ଜିଲ୍ଲାର ପାର୍ବତ୍ୟ ଅଞ୍ଚଳର ଲୋକେ ଆସାମ ରାଜ୍ୟର ଚା ବଗିଚାରେ ମଧ୍ୟ ମୂଲ ଖଟିବାକୁ ଯାଉଥିଲେ । ୧୯୩୮-୩୯ ମସିହାର ସଂଗୃହିତ ହିସାବରୁ ଏମାନଙ୍କ ସଂଖ୍ୟା ୩,୩୨୫ ଥିଲା । କୋୟା ଓ ପରଜା ଜାତିର ଲୋକେ ବହୁ ସଂଖ୍ୟାରେ ନିଜର ଜୀବିକା ମେଣ୍ଟାଇବା ପାଇଁ ଚା ବଗିଚାଗୁଡ଼ିକରେ ଶ୍ରମ କରୁଥିଲେ ।

କୋରାପୁଟ ଜିଲ୍ଲାର ଅଧିବାସୀମାନଙ୍କ ମଧ୍ୟରେ ବହୁ ଭାଷା ପ୍ରଚଳିତ ଥିଲା । ପ୍ରତ୍ୟେକ ଏକ ହଜାର ଲୋକଙ୍କ ମଧ୍ୟରୁ ଓଡ଼ିଆ—୫୫୨, କନ୍ଧ—୧୮୬, ତେଲୁଗୁ—୭୩, ସଉରା—୫୩, ପରଜା—୩୯, ଗାଦବା—୨୬, କୋୟା—୨୨, କଣ୍ଡା—୧୭, କାଟାପୁ—୧୬ ଏବଂ ଗୋଣ୍ଡି—୮ ଜଣଙ୍କ ମାତୃଭାଷା ଥିଲା । ଅବଶିଷ୍ଟ ୮ ରୁ ୬ ଜଣଙ୍କ ଭାଷାର କୌଣସି ମୌଳିକତା ନଥିଲା ଏବଂ ଏଥିରେ ଧୃବ, ଝଡ଼ିଆ, ଖାରେଙ୍ଗ ଓ ପେଙ୍ଗ ଅନ୍ତର୍ଭୁକ୍ତ । ଅନ୍ୟ ୨ଟି ଭାରତୀୟ ଭାଷା ହିନ୍ଦି ଓ ଛତିଶଗଡ଼ିର ମଧ୍ୟ ପ୍ରଚଳନ ଥିଲା ।

୧୯୪୧ ଜନଗଣନା ଅନୁଯାୟୀ କୋରାପୁଟ ଜିଲ୍ଲାର ୧୧,୨୭,୬୬୨ ଜଣ ଅଧିବାସୀମାନଙ୍କ ମଧ୍ୟରୁ କେବଳ ୨୫,୬୫୫ ଜଣ ମୁସଲମାନ ଓ ୧୦,୩୦୪ ଜଣ ଖ୍ରୀଷ୍ଟଧର୍ମୀ ଥିଲେ ଅବଶିଷ୍ଟ ସମସ୍ତେ ହିନ୍ଦୁ ଥିଲେ । ମୁସଲମାନ ଧର୍ମୀ ଲୋକେ ଏହି ଜିଲ୍ଲାକୁ ନିଜର ଶାସକ ବା ଧାର୍ମିକ ବ୍ୟବସାୟୀ ରୂପେ ଅନୁପ୍ରବେଶ କରିଥିଲେ । ଜୟପୁର ଓ ନବରଙ୍ଗପୁର ତାଲୁକାରେ ବିଶେଷ କରି ମୁସଲମାନମାନେ ରହୁଥିଲେ । କିନ୍ତୁ ଖ୍ରୀଷ୍ଟ ଧର୍ମର ମଧ୍ୟ ଏ ଜିଲ୍ଲାରେ ଧର୍ମ ପରିବର୍ତ୍ତନ ଦ୍ୱାରା ହୋଇଥିଲା । ୧୮୮୨ ସାଲରେ ସର୍ବ ପ୍ରଥମେ ରେଭ. ଏଚ୍. ବାଥମ୍ୟାନ ଓ ଇ. ପଦ୍ମଲ ମିଶନାରୀ କାମ ଆରମ୍ଭ କରିଥିଲେ । ପରେ ପରେ କୋରାପୁଟ ଜିଲ୍ଲାରେ ମିଶନାରୀ କାର୍ଯ୍ୟ ବୃଦ୍ଧି ପାଇଥିଲା ଏବଂ ଧର୍ମାନ୍ତରଣ କାମଟି କ୍ଷୀପ୍ର ଗତିରେ ବଢ଼ି ଯାଇଥିଲା ।



କୋରାପୁଟ ଜିଲ୍ଲା ପାର୍ବତ୍ୟ ଲୋକଙ୍କ ଭିଟାମାଟି । ସମୁଦାୟ ଜନସଂଖ୍ୟାର ୮୩ ଭାଗ (୧୯୩୬) । ଏମାନଙ୍କୁ ତିନି ଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମଟି ହେଲା ଦ୍ରାବିଡ଼ ସଭ୍ୟତାର ଲୋକ—କନ୍ଧ, ପରଜା, ଗଣ୍ଡ, କୋୟା । ଦ୍ୱିତୀୟଟି ହେଲା ମୁଣ୍ଡା ଜାତିର ଲୋକ ସଉରା ଓ ଗାଦବା ପ୍ରଧାନତଃ ଏହି ଶ୍ରେଣୀର ପ୍ରତିନିଧି । ଅବଶିଷ୍ଟ ପାର୍ବତ୍ୟ ଶ୍ରେଣୀର ଲୋକଙ୍କ କୂଳ ବା ଉତ୍ପତ୍ତି ସମ୍ବନ୍ଧରେ କୌଣସି ନିର୍ଦ୍ଦିଷ୍ଟ ତଥ୍ୟ ସଂଗୃହୀତ ହୋଇ ପାରିନାହିଁ । କିନ୍ତୁ ଏହି ଶ୍ରେଣୀର ଲୋକେ ଶତାବ୍ଦୀ ଶତାବ୍ଦୀ ଧରି ମାଳପାର୍ବତ୍ୟ ଅଞ୍ଚଳର ଅଧିବାସୀ । ଏମାନଙ୍କ ମଧ୍ୟରେ ଭୂମିଆ, ମାଟିଆ, ଭତ୍ରା ଜାତି ଉଲ୍ଲେଖ ଯୋଗ୍ୟ । ଏହି ପାର୍ବତ୍ୟ ଜାତିର ଲୋକଙ୍କ ନାମ କରଣ ବେଶ କୌତୁହଳ ପୂର୍ଣ୍ଣ । ସପ୍ତାହର ଦିବସ, ଗଛ ପତ୍ର ଏବଂ ବନ୍ୟଜନ୍ତୁଙ୍କ ନାମରେ ଅଧିକାଂଶ ଲୋକଙ୍କ ନାମ କରଣ ହୋଇଥାଏ । ପ୍ରତ୍ୟେକ ଗ୍ରାମରେ ପଥର କିମ୍ବା ଗଛ ନିକଟରେ କୌଣସି ନା କୌଣସି ଦେବଦେବୀଙ୍କ ଆରାଧନା କରାଯାଉଥିଲା ।

କନ୍ଧ—ଜିଲ୍ଲାରେ କନ୍ଧ ଜାତିଙ୍କ ସଂଖ୍ୟା ଅଧିକ ଥିଲା । ବିଷମକଟକ, ରାୟଗଡ଼ ଓ ଗୁଣୁପୁର ତାଲୁକାର ପଶ୍ଚିମାଞ୍ଚଳରେ ଏମାନଙ୍କ ଯଥେଷ୍ଟ ସଂଖ୍ୟା ଗରିଷ୍ଠତା ରହିଥିଲା । ଏହି ଜାତିର ଲୋକେ କୌଣସି ଗୋଟିଏ ସ୍ଥାନରେ ସ୍ଥାୟୀ ବସତି ସ୍ଥାପନ କରି ନଥିଲେ । କନ୍ଧ ଜାତି ପୁଣି କୁଟିଆ, ଦେଶିଆ ଓ ଡଙ୍ଗରିଆ କନ୍ଧରେ ବିଭକ୍ତ । ଜଟାପୁ, ଦୋରା, ଇନେଟି ଦୋରା ଓ କଣ୍ଡା ଦୋରା ମଧ୍ୟ କନ୍ଧ ଜାତି ଅନ୍ତର୍ଭୁକ୍ତ । ଜଟାପୁ କନ୍ଧମାନଙ୍କ ନାମ ଆଗରେ ସର୍ବଦା ତୋୟିକା, ମାଡ଼ାଙ୍ଗୀ କିମ୍ବା କଣ୍ଡାଗରେ ପଦବି ଲାଗିଥାଏ ।

ସଉରା—ଦ୍ରାବିଡ ସଭ୍ୟତାର ବଂଶଧର କନ୍ଧ ଜାତି ପରେ ମୁଣ୍ଡା ଶ୍ରେଣୀର ସଉରା ଜାତିର ବିଶେଷତ୍ୱ ରହିଛି । ଏହି ଜାତିର ନାମ ଓ ପରମ୍ପରା ଦୀର୍ଘ ଦୁଇ ହଜାରରୁ ଊର୍ଦ୍ଧ୍ୱ ବର୍ଷରୁ ପରିଚିତ । ରାମାୟଣ ଓ ମହାଭାରତରେ ଏହି ଜାତିର ନାମ ଉଲ୍ଲେଖ ରହିଛି । ଗଙ୍ଗାନଦୀର ଦକ୍ଷିଣ ଓ ପୂର୍ବ ଦିଗରେ ବହୁ ବର୍ଷ ପୂର୍ବେ ଯେଉଁ ସଭ୍ୟତା ଗଢ଼ି ଉଠିଥିଲା ଏମାନେ ସେହି ସଭ୍ୟତାର ବଂଶଧର ବୋଲି କୁହାଯାଇଅଛି । ସଉରା ଓ

କନ୍ଧ ଜାତିର ଲୋକଙ୍କ ମଧ୍ୟରେ ସାମାନ୍ୟ ପାର୍ଥକ୍ୟ ଦେଖିବାକୁ ମିଳେ । ସବୁ ବଂଶୀୟ ଲୋକଙ୍କ ଶରୀରର ବର୍ଣ୍ଣ ସାଧାରଣତଃ ଗୋରା ରଙ୍ଗ ।

ପରଜା — କୋରାପୁଟ, ପଟାଙ୍ଗୀ ଓ ଜୟପୁର ତାଲୁକାରେ ପରଜା ଜାତିର ଲୋକେ ବହୁ ସଂଖ୍ୟାରେ ବସବାସ କରୁଥିଲେ । ଏହି ଜାତିର ମଧ୍ୟ ବଣ୍ଡା, କନ୍ଧ ପରଜା ପ୍ରଭୃତି ଶ୍ରେଣୀ ରହିଛି । ପରଜା ଜାତିର ସ୍ତ୍ରୀମାନେ ଦେହ ସାଜସଜ୍ଜାରେ ବିଶେଷ ଧ୍ୟାନ ଦେଇଥାନ୍ତି ।

ଗାଦବା—ଗାଦବା ଜାତିଟି ମୁଣ୍ଡା ଶ୍ରେଣୀରେ ଅନ୍ତର୍ଭୁକ୍ତ । ଏହି ଜାତିଟି ବଡ, ସାନ ଓ ଅଲର ଶ୍ରେଣୀରେ ବିଭକ୍ତ । ନନ୍ଦପୁର, ସେମିଳିଗୁଡା ଅଞ୍ଚଳରେ ଗାଦବା ଜାତିର ଲୋକେ ବହୁ ସଂଖ୍ୟାରେ ବାସ କରୁଥିଲେ ।

ବଣ୍ଡା ପରଜା - କୋରାପୁଟ ଜିଲ୍ଲାର ବଣ୍ଡା ପରଜାମାନେ ଏକ ହିଂସ୍ର ସ୍ୱଭାବ ଜାତି ଭାବେ ପରିଚିତ । ମାଛକୁଣ୍ଡ ଓ ମାଲକାନଗିରି ଅଞ୍ଚଳଟି ଏମାନଙ୍କ ବାସସ୍ଥଳୀ । ଉଲଗ୍ନ ରହିବା ଏହି ଜାତିର ଏକ ପରମ୍ପରା । ବଣ୍ଡା ଜାତିର ସ୍ତ୍ରୀ ଲୋକେ ମୁଣ୍ଡର ବାଳ କାଟି ଟାଙ୍ଗରା ରହନ୍ତି ।

କୋୟା — ମାଲକାନଗିରି ତାଲୁକାର ଦକ୍ଷିଣାଞ୍ଚଳରେ କୋୟାମାନେ ବିଶେଷ ସ୍ଥାନ ଅଧିକାର କରିଥିଲେ । ଏ ଜାତିର ଲୋକେ ପୂର୍ବ ଗୋଦାବରୀ ଜିଲ୍ଲାରୁ ଏଠାକୁ ଅନୁପ୍ରବେଶ କରିଥିବା କୁହାଯାଉଅଛି । ନବରଙ୍ଗପୁର ତାଲୁକାରେ ଉତ୍ତରାଞ୍ଚଳରେ ବସବାସ କରୁଥିବା ଗଣ୍ଡମାନଙ୍କ ଠାରୁ କୋୟାମାନେ ପୁରାତନ । କୋୟାମାନଙ୍କ ନୃତ୍ୟ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥାଏ ।

ଭତଡ଼ା— ଜୟପୁର ଓ ନବରଙ୍ଗପୁର ଅଞ୍ଚଳରେ ଭତଡାମାନେ ସଂଖ୍ୟାଧିକ ଥିଲେ । ଏ ଜାତିର ଲୋକେ ଦେହରେ ପଇତା ବ୍ୟବହାର କରନ୍ତି । ପ୍ରାୟ ସମସ୍ତ ଭତଡା ଅଶୁଦ୍ଧ ଓଡ଼ିଆ ଭାଷାରେ କଥାବାର୍ତ୍ତା କରିପାରନ୍ତି । କୃଷି ଏମାନଙ୍କର ପ୍ରଧାନ ଜୀବିକା ଥିଲା । ଏ ଜାତିର ଲୋକେ ଅନ୍ୟ ସମସ୍ତ ପ୍ରାଚୀନ ଜାତିର ଲୋକଙ୍କ ଠାରୁ ସବୁ ଦିଗରୁ ଉନ୍ନତ ।

ଅମନାତ୍ୟ—ନବରଙ୍ଗପୁର ଓ ଜୟପୁର ଅଞ୍ଚଳରେ ଅମନାତ୍ୟ ଜାତିର ଲୋକେ ବାସ କରୁଥିଲେ । ଭତଡା ଜାତିର ଲୋକଙ୍କ ସହ ଏମାନଙ୍କ ସାମଞ୍ଜସ୍ୟ ରହିଛି । ଭତଡ଼ା ଜାତି ଭଳି ଏହି ଜାତିଟି ମଧ୍ୟ ବଡ ଓ ସାନ ଶ୍ରେଣୀରେ ବିଭକ୍ତ ।

ଭୂମିଆ—ଜୟପୁର ଓ ମଲକାନଗିରିର ଦକ୍ଷିଣରେ ଭୂମିଆମାନଙ୍କ ବାସସ୍ଥଳୀ । ଏ ଜାତିର ଲୋକମାନେ ଷଟଟଟାଣୀ ଭେଦେ ଦହ ଦମାନ । ଏମାନେ ଓଡ଼ିଆ ଭାଷୀ । ଭୂମିଆମାନେ ଭୂମି ବା ମାଟିରୁ ଜନ୍ମ ନେଇଛନ୍ତି ବୋଲି ଦାବି କରନ୍ତି ।

ଡମ୍ବ—ଡମ୍ବ ଜାତିର ସଂଖ୍ୟା କୋରାପୁଟ ଜିଲ୍ଲାରେ ନ୍ୟୂନ ନଥିଲା । ଜିଲ୍ଲାର ପ୍ରତ୍ୟେକ ଗାଁଗଣ୍ଡାରେ ନିଶ୍ଚିତ ଭାବେ ଏହି ଜାତିର ଲୋକମାନଙ୍କୁ ଦେଖିବାକୁ ମିଳୁଥିଲା । ବିଭିନ୍ନ ସ୍ଥାନରେ ବସବାସ କରୁଥିଲେ ମଧ୍ୟ ଡମ୍ବମାନଙ୍କ ଆଚାର ସଂସ୍କୃତି ଏକ ପ୍ରକାର ଥିଲା । ଆଦିବାସୀ ଲୋକଙ୍କ ଅପେକ୍ଷା ଡମ୍ବ ଲୋକଙ୍କ ବୁଦ୍ଧି ଓ କୌଶଳ ପଣିଆ ଯଥେଷ୍ଟ ଅଧିକ । ସେତେବେଳେ ଏହି ଜାତିର ଲୋକେ ଚୋରୀ ଡକାୟତି ପ୍ରଭୃତି ଅସାମାଜିକ କାର୍ଯ୍ୟରେ ଲିପ୍ତ ରହିବା ବିଶେଷ ଭାବେ ପରିଲକ୍ଷିତ ହେଉଥିଲା । ପଟାଙ୍ଗୀ, କୋରାପୁଟ, ଜୟପୁର ଓ ନବରଙ୍ଗପୁର ଅଞ୍ଚଳର ଓଡ଼ିଆ ଡମ୍ବମାନଙ୍କୁ ୧୯୨୩ ସାଲରେ ୧୯୧୧—ଫୌଜଦାରୀ ଅଇନାନୁଯାୟୀ ଏକ ଫୌଜଦାରୀ ଜାତି ଭାବେ ଘୋଷଣା କରାଯାଇଥିଲା । ଖ୍ରୀଷ୍ଟିଆନ ମିଶନାରୀ କାର୍ଯ୍ୟ ଏ ଜିଲ୍ଲାରେ ଆରମ୍ଭ ହେବାପରେ ବହୁ ସଂଖ୍ୟାରେ ଏ ଜାତିର ଲୋକଙ୍କୁ ଖ୍ରୀଷ୍ଟ ଧର୍ମର ଧର୍ମାନ୍ତରୀକରଣ କରାଯାଇଥିଲା ।

ପୂର୍ବ ବର୍ଣ୍ଣିତ ପ୍ରାଚୀନ ଗୋଷ୍ଠୀୟ ଲୋକଙ୍କୁ ବାଦ ଦେଇ କୋରାପୁଟ ଜିଲ୍ଲାରେ ଗଉଡ଼, ରଣା, ପାଇକ ମୁକାଦୋର, କମାର, ଲହର, ମାଳି ଓ ସୁଣ୍ଡି ଜାତିର ଲୋକେ ମଧ୍ୟ ବସବାସ କରୁଥିଲେ । ବ୍ରାହ୍ମଣ ଓ କରଣ ପ୍ରଭୃତି ଉଚ୍ଚ ଜାତି ଲୋକଙ୍କ ସଂଖ୍ୟା ବହୁତ କମ ଥିଲା ।



ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେବା ପୂର୍ବରୁ କୋରାପୁଟ ବୋଲି ଗୋଟିଏ ଜିଲ୍ଲା ନଥିଲା । ଆଜିର କୋରାପୁଟ ଜିଲ୍ଲା ସେତେବେଳେ ମାନ୍ଦ୍ରାଜ ପ୍ରେସିଡ଼େନସିର ବିଶାଖପାଟଣା ଜିଲ୍ଲା ଅନ୍ତର୍ଗତ ଥିଲା । ବିଶାଖପାଟଣା ଜିଲ୍ଲାକୁ ପାଞ୍ଚଗୋଟି ଡ଼ିଭିଜନରେ ବିଭକ୍ତ କରାଯାଇଥିଏ । ୧—ନରସିଂହପାଟନାମ ଡ଼ିଭିଜନ ୨—ବିଜୟନଗରମ ଡ଼ିଭିଜନ, ୩—ପାର୍ବତୀପୁରମ ଡ଼ିଭିଜନ, ୪—କୋରାପୁଟ ଏଜେନସି ଡ଼ିଭିଜନ, ୫—ବିଶାଖପାଟଣାମ ଡ଼ିଭିଜନ ।

କୋରାପୁଟ ଡ଼ିଭିଜନରେ କୋରାପୁଟ, ପଟାଙ୍ଗୀ, ମାଲକାନଗିରି, ନବରଙ୍ଗପୁର, ଜୟପୁର, ଓ ପାଡ଼ୁଆ ଏଜେନସି ରହିଥିଲା । ଗୁଣୁପୁର, ରାୟଗଡ଼ ଓ ବିଷମକଟକ ଏଜେନସି ପାର୍ବତୀପୁରମ ଡ଼ିଭିଜନ ଅନ୍ତର୍ଗତ ଥିଲା । ଡ଼ିଭିଜନର ମୁଖ୍ୟ ଭାବେ ସ୍ୱତନ୍ତ୍ର ସହକାରୀ ଏଜେଣ୍ଟ ଓ ତାଲୁକାଗୁଡ଼ିକରେ ତହସିଲଦାର ବା ଡ଼େପୁଟି ତହସିଲଦାର ରହି ଶାସନ ପରିଚାଳନା କରୁଥିଲେ ।

ପରେ ଉପରୋକ୍ତ ୧୯୨୦ ସାଲରେ ଗଞ୍ଜାମ, ବିଶାଖପାଟଣା ଓ ଗୋଦାବରୀ ଜିଲ୍ଲାର ମାଲଅଞ୍ଚଳକୁ ନେଇ ଏକ 'ଏଜେନସି ଡ଼ିଭିଜନ' ଗଠିତ ହୋଇଥିଲା । ଏଜେନସି କମିଶନରଙ୍କ ଅଧିନରେ ରହି ମାଲଅଞ୍ଚଳର ଶାସନ ପରିଚାଳିତ ହେଉଥିଲା । ତେଣୁ କୋରାପୁଟ ଜିଲ୍ଲାର ଶାସନ ବ୍ୟବସ୍ଥା ନେଇ ସ୍ୱତନ୍ତ୍ର କ୍ଷମତା ପ୍ରୟୋଗ କରିବାର ଅଧିକାର କମିଶନରଙ୍କ ରହିଥିଲା ।

ସେତେବେଳେ କୋରାପୁଟ ଜିଲ୍ଲା ଜୟପୁର ଜମିଦାରୀ ବା କୋରାପୁଟ ମାଲଅଞ୍ଚଳ ଭାବେ ସର୍ବଜନ ପରିଚିତ ଥିଲା । ଘଞ୍ଚ, ଅରଣ୍ୟ, ପାହାଡ଼, ପର୍ବତରେ ପରିପୂର୍ଣ୍ଣ ହୋଇ ଅନ୍ୟାନ୍ୟ ଉନ୍ନତତର ଅଞ୍ଚଳରୁ ବିଚ୍ଛିନ୍ନ ରହିଥିଲା । ୧୯୧୯ ମସିହା ଭାରତ ସରକାରଙ୍କ ଆଇନ ଅନୁସାରେ ଏହାକୁ ଏକ ପଛୁଆ ଅଞ୍ଚଳ ଭାବେ ଗଣିତ କରାଯାଇ ଥିଲା । ଏକ ବହିର୍ଭୁକ୍ତ ଅଞ୍ଚଳ ଭାବେ ଘୋଷିତ ହୋଇଥିବାରୁ କୌଣସି ଉନ୍ନୟନ

କାର୍ଯ୍ୟ କରାଯିବାକୁ ବନ୍ଦ କରାଯାଇଥିଲା । କିନ୍ତୁ ୧୯୩୫ ମସିହା ଭାରତ ସରକାରଙ୍କ ଆଇନାନୁଯାୟୀ ଏହାକୁ 'ଆଂଶିକ ବହିର୍ଭୁକ୍ତ ଅଞ୍ଚଳ' ରୂପେ ଘୋଷଣା କରାଗଲା ଏବଂ ସ୍ୱାୟତ୍ତ ଶାସନ ପ୍ରଚଳିତ ହେଲା । କିନ୍ତୁ ବହୁ ପଛରେ ପଡ଼ିଥିବା ଆଦିବାସୀ ଲୋକଙ୍କୁ ଭୋଟ ଦେବା ଅଧିକାର ପ୍ରଦାନ କରାଯାଇ ନଥିଲା ।

କୋରାପୁଟିଆ ଇଂରେଜ ଅମଳରେ 'ପାର୍ବତ୍ୟ ଜାତି' ଭାବେ ସମ୍ବୋଧିତ ହୋଇଥିଲେ । ପୂର୍ବରୁ କୁହାଯାଇଛି, ଉଚ୍ଚ ଜାତି ଓଡ଼ିଆ ତେଲୁଗୁ ଓ ମୁସଲମାନଙ୍କ ଅନୁପ୍ରବେଶ ପୂର୍ବରୁ ଏହା କେବଳ ପୂର୍ବରୁ ବର୍ଣ୍ଣିତ ଆଦିମ ଅଧିବାସୀଙ୍କ ହିଁ ଭିଟାମାଟି । ମାଡ୍ରାସ ପ୍ରେସିଡେନ୍ସିର ବିଶାଖାପାଟଣା ଜିଲା ଭିତରେ ଏହା ରହିଥିବାରୁ ତେଲୁଗୁ ଭାଷୀ ଲୋକେ ଏଠାରେ ନିଜର ଆସ୍ଥାନ ଜମେଇ ପାରିଥିଲେ । କାଳକ୍ରମେ ଏହି ତେଲୁଗୁ ଭାଷୀମାନେ ଜମିଦାରୀ ଓ ଶାସନରେ ନିଜର ପ୍ରଭୁତ୍ୱ ବିସ୍ତାର କରିପାରିଥିଲେ ।

ପ୍ରେସିଡେନ୍ସିର ଉପାନ୍ତ ଅଞ୍ଚଳ ହୋଇଥିବାରୁ ଜିଲାଟି ଶାସନ ଦ୍ୱାରା ସର୍ବଦା ଅବହେଳିତ ଥିଲା । ଶାସକର ପଶୁ ତୁଲ୍ୟ ବ୍ୟବହାର ଓ ଦମନରେ ଏଠାକାର ଲୋକେ କେବେ ସୁଖୀ ନଥିଲେ । ଲୋକଙ୍କ ଦୁଃଖ ମୋଚନ କରି ସେମାନଙ୍କ ଉନ୍ନତି କରିବାକୁ କେବେ ଉଦ୍ୟମ କରି ନଥିଲେ । ଅତି ଦୁର୍ଭାଗ୍ୟର ବିଷୟ ଯେ ଦ୍ୱୈତ ଶାସନରେ ଶାସିତ କୋରାପୁଟିଆର ଦୁଇ ବାହୁକୁ ସାହେବ ସରକାର ଓ ଜମିଦାର ଟାଣି ନିଜ ସ୍ୱାର୍ଥ ପାଇଁ ଘୋଷାଡ଼ି ଚାଲିଥିଲେ ।



୭

ଇଂରେଜ ରାଜତ୍ୱ ସମୟରେ କୋରାପୁଟିଆର ସ୍ୱାର୍ଥ ପାଇଁ ପଦେ କଥା କହିବାର କାହାର ସାହସ ନଥିଲା । ଶିକ୍ଷା ସ୍ୱାସ୍ଥ୍ୟ, ଆର୍ଥିକ ଓ ସାମାଜିକ ଦୃଷ୍ଟି କୋଣରୁ ବିଚାର କଲେ ଦେଖିବାକୁ ମିଳେ ଯେ କୋରାପୁଟିଆକୁ ସର୍ବଦା ସବୁ କ୍ଷେତ୍ରରେ ଶାସକର ହୀନମାନ୍ୟତାର ହେବାକୁ ପଡୁଥିଲା । ଇଂରେଜ ସରକାରଙ୍କ ଏବଂ ଜମିଦାରୀ କର୍ମଚାରୀ ମାନଙ୍କ ମଧ୍ୟରୁ ଅଧିକାଂଶ ତେଲୁଗୁ ଥିଲେ । ଜୟପୁର ଜମିଦାରଙ୍କ ଦେୱାନ ସର୍ବଦା ଜଣେ ତେଲୁଗୁ ଭାଷୀ ନିଯୁକ୍ତ ହେଉଥିଲେ । ବ୍ରିଟିଶ ସରକାରଙ୍କ ବିଭିନ୍ନ ବିଭାଗର ମୁଖ୍ୟ ସ୍ଥାନଗୁଡ଼ିକ ଏହି ତେଲୁଗୁ ଭାଷୀ ଅକ୍ତିଆର କରି ସମସ୍ତ କଥା ଓ କାର୍ଯ୍ୟକୁ ମନ ଇଚ୍ଛା ଓ ସ୍ୱାର୍ଥ ମୁତାବକ କାର୍ଯ୍ୟକାରୀ କରାଇ ପାରୁଥିଲେ । ଏହି ମାଟିର ସନ୍ତାନ ମୂକ ବଧିର ହୋଇଯାଇଥିଲେ । ସେମାନଙ୍କ ସମସ୍ୟା ଓ ଦୁଃଖର କାହାଣୀକୁ କେହି କର୍ଣ୍ଣପାତ କରୁ ନଥିଲେ । ନିଜର ଦାବୀ ଉପସ୍ଥାପନ, ଅଧିକାର ସାବ୍ୟସ୍ତ କିମ୍ବା ସମସ୍ୟାର ପ୍ରତିକାର କରିବା ପାଇଁ ମନରେ ଇଚ୍ଛା ହେଉଥିଲେ ମଧ୍ୟ ସେପରି କୌଣସି ମାଧ୍ୟମ ବା ସଂଗଠନ ସେତେବେଳେ ନଥିବାରୁ ଅଣ ନିଶ୍ୱାସୀ ହୋଇ ରହିଥିଲା । ମଣିଷ ହୋଇ ପଶୁ ଭାବେ ବଞ୍ଚିବାକୁ ସେତେବେଳର ଅନ୍ଧାରିଆ ଶାସନ ଓ ପରିସ୍ଥିତି ତାକୁ ବାଧ୍ୟ କରି ରଖିଥିଲା ।

ସେ ସମୟରେ ଜୟପୁର ଜମିଦାର ବାର୍ଷିକ ୬୦ ଲକ୍ଷ ଟଙ୍କା ଆୟ କରୁଥିଲେ । ଏଥି ମଧ୍ୟରୁ ମାତ୍ର ୧୬ ହଜାର ଟଙ୍କା 'ପେସକ୍ଷେସ' ଦେଇ ଅବଶିଷ୍ଟ ଆୟ କେବଳ ଜମିଦାରଙ୍କ ପାଇଁ ବ୍ୟୟିତ ହେଉଥିଲା । ଲୋକଙ୍କ ଝାଳପୋଛା ଟଙ୍କାରେ ଜମିଦାର ଓ ତାଙ୍କର ଅଧସ୍ତନ ଅଳ୍ପ ସଂଖ୍ୟକ ଚାଟୁକାର ମଜା ମଜଲିସରେ କାଳାତିପାତ କରୁଥିଲେ । ସ୍ଥାନୀୟ ମାଟିଆ ମଣିଷର ସୁଖ ସମୃଦ୍ଧି ପାଇଁ କିଛି ଖର୍ଚ୍ଚ ହେଉ ନଥିଲା । ନଗଣ୍ୟ କେତେକ ଉଚ୍ଚ ଜାତି ଓଡ଼ିଆ ଲୋକଙ୍କ ସମେତ ଅଧିକାଂଶ ତେଲୁଗୁ ଲୋକେ ଜମିଦାରଙ୍କ ଦ୍ୱାରା ବେଶ ଉପକୃତ ହୋଇ ଆନନ୍ଦରେ କାଳାତିପାତ କରୁଥିଲେ ।

ଏଠାରେ ଯେଉଁ ଅଳ୍ପ ସଂଖ୍ୟକ ଶିକ୍ଷାନୁଷ୍ଠାନ ରହିଥିଲା, ସେଗୁଡ଼ିକୁ ଜମିଦାରୀ ତରଫରୁ ଆର୍ଥିକ ସାହାଯ୍ୟ ଦିଆଯାଉ ନଥିଲା । ତାଙ୍କ ଦ୍ୱାରା ଏ ଜିଲ୍ଲାରେ ଗୋଟିଏ ମଧ୍ୟ

ବିଦ୍ୟାଳୟ ପରିଚାଳିତ ହେଉ ନଥିଲା । ଶିକ୍ଷା କ୍ଷେତ୍ରରେ ଓଡ଼ିଆମାନଙ୍କ ପ୍ରତି ଉଦାସୀନତା ପ୍ରଦର୍ଶନ କରାଯାଉଥିଲା । ଓଡ଼ିଆ ସେତେବେଳେ ତେଲୁଗୁ ଭାଷାରେ ଅଧ୍ୟୟନ କରିବାକୁ ବାଧ୍ୟ ହେଉଥିଲେ । ଶିକ୍ଷାନୁଷ୍ଠାନ ଗୁଡ଼ିକରେ ଅଧିକାଂଶ ତେଲୁଗୁ ଭାଷୀଙ୍କୁ ହିଁ ଶିକ୍ଷକ ଭାବେ ନିଯୁକ୍ତି ଦିଆଯାଉଥିଲା । ୯୨ ଭାଗ ଓଡ଼ିଆ ଥିବାବେଳେ କେବଳ ୯୬ ଭାଗ ତେଲୁଗୁ କର୍ମଚାରୀଙ୍କ ପାଇଁ ଶିକ୍ଷାର ସୁବିଧା କରାଯାଇଥିଲା । ଓଡ଼ିଆଙ୍କୁ ଶିକ୍ଷକ ବା ପ୍ରଧାନ ଶିକ୍ଷକ କରିବାରେ ସର୍ବଦା ପାତର ଅନ୍ତର କରାଯାଉଥିଲା ।

୧୯୩୫ ମସିହାର ହିସାବ—

| ସ୍କୁଲ | ଛାତ୍ର | | ଶିକ୍ଷକ | |
| --- | --- | --- | --- | --- |
| | ଓଡ଼ିଆ | ତେଲୁଗୁ | ଓଡ଼ିଆ | ତେଲୁଗୁ |
| ଜୟପୁର ହାଇସ୍କୁଲ | ୪୦% | ୬୦% | ୩୩ ୧/୩% | ୬୬ ୨/୩% |
| ଗୁଣୁପୁର ହାଇସ୍କୁଲ | ୫୫% | ୪୫% | ୪୦% | ୬୦% |
| ନବରଙ୍ଗପୁର ମଧ୍ୟମ ସ୍କୁଲ | ୭୦% | ୩୦% | ୫୦% | ୫୦% |
| କୋଟପାଡ଼ ମଧ୍ୟମ ସ୍କୁଲ | ୮୦% | ୨୦% | ୬୬ ୨/୩% | ୩୩% |

ସେ ସମୟରେ ସମସ୍ତ ପ୍ରକାର ଦଲିଲ ପତ୍ର ଇଂରାଜୀ କିମ୍ବା ତେଲୁଗୁ ଭାଷାରେ ମୁଦ୍ରିତ କରାଯାଉଥିଲା । ରୟତମାନଙ୍କୁ ତେଲୁଗୁ କିମ୍ବା ଇଂରାଜୀ ଭାଷାରେ ମୁଦ୍ରିତ ରସିଦ ଦିଆଯାଉଥିଲା । ଏହା ଦ୍ୱାରା ଓଡ଼ିଆ ଭାଷୀ ରୟତ ବିଶେଷ ଅସୁବିଧାର ସମ୍ମୁଖୀନ ହେଉଥିଲେ । ରାଜସ୍ୱ ବିଭାଗର ଶତକଡ଼ା ୮୫ ଭାଗ କର୍ମଚାରୀ ତେଲୁଗୁ ଥିଲେ । ରାଜସ୍ୱ ବିଭାଗର କର୍ମଚାରୀଙ୍କ ଅନ୍ୟାୟ ଅତ୍ୟାଚାର ଦ୍ୱାରା ରୟତ କୂଳ ଅତି ଦୟନୀୟ ଅବସ୍ଥାରେ କାଳାତିପାତ କରୁଥିଲେ । ରୟତମାନଙ୍କ ଦେୟ ଧାନ ଜମିଦାରଙ୍କ ଗାଦିଆକୁ ଆଣି ଦେଇ କରିବାକୁ ପଡ଼ୁଥିଲା । ୨୦/୩୦ ମାଇଲ ଦୂରରୁ ଧାନ ବୋହିଆଣି ଗାଦିଆରେ ଜମା ଦେଉଥିଲେ ମଧ୍ୟ ସେମାନଙ୍କୁ କୌଣସି ପାରିଶ୍ରମିକ ବା ପରିବହନ ଖର୍ଚ୍ଚ ଦିଆଯାଉ ନଥିଲା । ପ୍ରତ୍ୟେକ ରାଜସ୍ୱ କର୍ମଚାରୀଙ୍କ ଘରେ ୩, ୪ ଜଣ ଲୋକଙ୍କୁ ବେଠିଆ ଖଟିବାକୁ ବାଧ୍ୟ କରାଯାଉଥିଲା । ଏମାନଙ୍କୁ କୌଣସି ମଜୁରି ନ ଦେଇ ସମସ୍ତ ପ୍ରକାର କାର୍ଯ୍ୟରେ ଲଗା ଯାଉଥିଲା । ଏ ଭଳି କି ବାବୁମାନଙ୍କ ସ୍ତ୍ରୀ ଝିଅଁ ଲୁଗା ବେଠିଆମାନଙ୍କ ଦ୍ୱାରା ସଫା କରାଯାଉଥିଲା । ପଟ୍ଟା ବଦଳ କିମ୍ବା ମୁଚଲିକା ହେବା କାଠିକର ପାଠ ଥିଲା । ଏହା କ୍ୱଚିତ ପରିମାଣରେ ହୋଇପାରୁଥିଲା । କିମ୍ବା ପଟ୍ଟାରେ ଜମିର ସୀମା ନିର୍ଦ୍ଦିଷ୍ଟ ଭାବେ ଦର୍ଶାଯାଉ ନଥିଲା । ରୟତମାନଙ୍କ କୃଷି ଜମିର ଉନ୍ନତି ପାଇଁ କୌଣସି ପ୍ରକାର ସାହାଯ୍ୟ ବା ଉନ୍ନୟନ କାର୍ଯ୍ୟ କରାଯାଉ ନଥିଲା । କିନ୍ତୁ ଫସଲ ନଷ୍ଟ ହୋଇଥିଲେ ମଧ୍ୟ ସେମାନଙ୍କ ଠାରୁ ଜମିଦାରଙ୍କ ପାପ୍ୟ ଧାନ ଜୋର ଜବରଦସ୍ତ ଆଦାୟ କରାଯାଉ ଥିଲା । ଜୟପୁର ଜମିଦାରଙ୍କ ପକ୍ଷରୁ ଗାଁ ଗଣ୍ଡାର କୃଷି ଜମିର ସିଷ୍ଟ ଆଦାୟ କରିବା ପାଇଁ

ଭୂକ୍ତା, ନାୟକ, ଗାଁଉଣ୍ଟିଆ, ଇନାମଦାର, ମୁସ୍ତାଦାର ସେଦାନ୍ତାର ପ୍ରଭୃତ୍ତ ନିଯୁକ୍ତ ପାଇଥିଲେ । ଇନାମଦାର ଓ ଭୂକ୍ତାମାନେ ଗାଁଗୁଡ଼ିକର ଇନାମଦାରୀ ହସ୍ତଗତ କରି ସଂପୃକ୍ତ ଗାଁର ସିସ୍ତ ଆଦାୟ କରୁଥିଲେ ଏବଂ ଆନନ୍ଦରେ ରହୁଥିଲେ । ଗାଁଟଣ୍ଡରେ ନିଯୁକ୍ତ ଗାଁଉଣ୍ଟିଆଙ୍କୁ ସାହାଯ୍ୟ କରିବା ପାଇଁ ଗଣ୍ଡା, ଚଣ୍ଡାଳ ଚଳାଣ ରହୁଥିଲେ । ସେମାନେ ମାଲିକର ନିର୍ଦ୍ଦେଶରେ ଲୋକଙ୍କ ଉପରେ ଅମାନୁଷିକ ଅତ୍ୟାଚାର ଓ ଦମନ ଚଳାଉଥିଲେ ।

ସେହି ସମୟରେ ବେପାରୀମାନେ ଓଜନ ଓ ମାପରେ ନିରୀହ ଆଦିବାସୀଙ୍କୁ ଠକି ବେଶ ଲାଭବାନ ହେଉଥିଲେ । ଏଥିପାଇଁ କୌଣସି ବିଧିବଦ୍ଧ ଆଇନର ପ୍ରଚଳନ ନଥିଲା ।

ଜଙ୍ଗଲ ବିଭାଗର କର୍ମଚାରୀମାନେ ଲୋକଙ୍କଠାରୁ ମୁଣ୍ଡ ବୋଝ କର ଆଦାୟ କରୁଥିଲେ । ଜଙ୍ଗଲକୁ ନିଜର ଜୀବିକା ମେଣ୍ଟାଇବା ମାଧ୍ୟମ କରି ଯେଉଁ ଅସଂଖ୍ୟ ଆଦିବାସୀ ଏହି ଜିଲ୍ଲାରେ ବଞ୍ଚି ରହୁଥିଲେ ସେମାନଙ୍କ ଉପରେ ଜଙ୍ଗଲ ବିଭାଗର ଅନ୍ୟାୟ କମ ନଥିଲା ।

ଗାଁ ଗହଳିର ଗମନାଗମନର ସୁବିଧା ପାଇଁ ରାସ୍ତାଘାଟର ରକ୍ଷଣା ବେକ୍ଷଣା ବା ଉନ୍ନତି କରାଯାଉ ନ ଥିଲା । ବର୍ଷା ଦିନେ ରଯ୍ୟତମାନେ ଧାନ ଆଣିବା ସମୟରେ କାଦୁଅ ରାସ୍ତା ଯୋଗୁଁ ବହୁତ କଷ୍ଟ ଭୋଗୁ ଥିଲେ । ଅନ୍ୟ ବ୍ୟବସାୟୀଙ୍କ ସୁବିଧା ଓ ସ୍ୱାର୍ଥ ରକ୍ଷା ଦୃଷ୍ଟିରୁ କେବଳ ସାଲୁର—ଜୟପୁର ଘାଟ ରାସ୍ତାର ଯାହା କିଛି ମରାମତି ପାଇଁ ଧ୍ୟାନ ଦିଆଯାଉଥିଲା ।



୭

କୋରାପୁଟ ଜିଲ୍ଲାରେ କେତୋଟି ଅମାନୁଷିକ ବେଆଇନ ପ୍ରଥାର ପ୍ରଚଳନ ଗରିବ ଆଦିବାସୀଙ୍କୁ ଅଣ ନିଶ୍ୱାସୀ କରିଥିଲା । ଯାହାଦ୍ୱାରା ଗରିବ ଲୋକେ ନିଜ ପରିବାର ପାଇଁ କିଛି କାର୍ଯ୍ୟ କରିପାରୁ ନଥିଲେ । ନିଜର କଷ୍ଟାର୍ଜିତ ଧନକୁ ବାବୁମାନଙ୍କ ପାଇଁ ଭେଟି ଦେବାକୁ ବାଧ୍ୟ ହେଉଥିଲେ । ଏହାର ପ୍ରତିକାର ପାଇଁ ଇଂରେଜ ରାଜତ୍ୱରେ କୌଣସି ରାସ୍ତା ନଥିଲା । ଅନେକଙ୍କୁ ଏହି ପ୍ରଥାର ଶିକାର ହୋଇ ମରିବାକୁ ପଡ଼ିଥିଲା, ଅନେକେ ଦାଣ୍ଡର ଭିକାରି ହୋଇଥିଲେ ଏବଂ ଅସଂଖ୍ୟ ଗରିବ ଆଦିବାସୀ ପରିବାରର ସ୍ତ୍ରୀ—ସନ୍ତାନ ଭୋକ ଉପବାସର ଅସହ୍ୟ ବେଦନାକୁ ନିଜର ଭାଗ୍ୟ ରୂପେ ଗ୍ରହଣ କରି ନେଇଥିଲେ ।

ଗାଁ ଘଇତା—ଘଇତା ଶବ୍ଦଟି କୋରାପୁଟ ଜିଲ୍ଲାରେ ପ୍ରଚଳିତ । ଏହି ଅଞ୍ଚଳରେ ଆଦିବାସୀମାନେ ସ୍ୱାମୀଙ୍କୁ 'ଘଇତା' ବୋଲିଥାନ୍ତି । ଗାଁ ଗଣ୍ଡାରେ ଯେଉଁ ନାୟକ, ଗାଁଉଟିଆ ରହିଥିଲେ, ସେମାନଙ୍କୁ 'ଗାଁ ଘଇତା' କୁହାଯାଉଥିଲା । ଏମାନଙ୍କ ଅନ୍ୟାୟ ଅତ୍ୟାଚାର ଅବର୍ଣ୍ଣନୀୟ । ଏହି ଗାଁ ଘଇତାମାନେ ନିଜର ମନ ମୁତାବକ ସିସ୍ତ ଆଦାୟ କରୁଥିଲେ । ଅମୁଲି ଧାନର ଅର୍ଦ୍ଧେକ ନିଜେ ମାରିନେଇ ବଳକା ଜମିଦାରଙ୍କୁ ଦେଉଥିଲେ । କେତେ ଗାଦିଆଗୁଡ଼ିକରେ ନାୟକ, ଗାଁଉଟିଆମାନେ ବଡ଼ ମାଣରେ ଧାନ ହିସାବ କରୁଥିଲେ । ଶଗଡ଼ରେ ରୟତମାନଙ୍କୁ ଧାନ ବୋହିଆଣି ଜମା ଦେବା ପାଇଁ ସପ୍ତାହ ସପ୍ତାହ ଜଗି ରହିବାକୁ ପଡୁଥିଲା । ଗାଦିଆ ଗୁଡ଼ିକର କର୍ମଚାରୀମାନଙ୍କୁ ଲାଞ୍ଚ ନଦେଲେ ଧାନ ମାପ ହୋଇପାରୁ ନଥିଲା । ରୟତମାନଙ୍କ ଧାନଗଦାକୁ ମାପ କରିବା ଦାୟିତ୍ୱରେ ଥିବା ରାଜ କର୍ମଚାରୀମାନେ ଜାଣି ଜାଣି ଗୋଇଠା ମାରି ଦେଉଥିଲେ । ବିଞ୍ଛି ହୋଇ ତଳେ ପଡ଼ିଥିବା ଧାନକୁ ପରେ ସଂଗ୍ରହ କରି ନିଜ ବ୍ୟବହାର ପାଇଁ ନେଉଥିଲେ । ନିଜ ହାତରୁ ଖାଇ ରୟତମାନେ ଗଣ୍ଡା ଚଲାଣିଙ୍କ ସହ ମାସ ମାସ ଗାଦିଆରେ ରହି ଖର୍ଚ୍ଚାନ୍ତ ହେଉଥିଲେ ।

ରସିଦ ଓ ଜମି ଛଡ଼ା—ଗାଁ ଗଣ୍ଡାରୁ ଧାନ କିମ୍ବା ଟଙ୍କା ଆକାରରେ ଯେଉଁ ସିସ୍ତ ଆଦାୟ କରାଯାଉଥିଲା ସେଥିପାଇଁ ରସିଦ ଦିଆଯାଉ ନଥିଲା । ନାୟକ, ଗଣ୍ଡା

ଚଲଣମାନେ ଇଚ୍ଛା କଲେ ଜଣେ ରୟତର ଜମି ଛଡ଼ାଇ ଅନ୍ୟକୁ ଦେଇ ପାରୁଥିଲେ । ରୟତର ନ୍ୟାୟ ପାଇବାକୁ କୌଣସି ସୁରା ନଥିଲା । ଏହି ଅନ୍ୟାୟ ଜମି ଛଡ଼ା ଯୋଗୁଁ ରୟତଙ୍କୁ ଦାରୁଣ ଭିକାରୀ ହେବାକୁ ପଡ଼ୁଥିଲା । କେତେକେ ଜୀବିକା ଉପାର୍ଜନ ପାଇଁ ଅନ୍ୟତ୍ର ଗାଁ । ଛାଡ଼ି ଚାଲିଯାଉଥିଲେ ।

ବେଠିଆ—ଏହା ହେଉଛି ଦାଢ଼ରୁ ଖାଇ ଘୋଡ଼ା ପଛରେ ଦଉଡ଼ିବା ପ୍ରଥା । ଏହି ପ୍ରଥାର ପ୍ରଚଳନ ଯୋଗୁଁ ରୟତମାନେ ନିଜ ଗୃହ ଓ ପରିବାର କାମ କରିବାକୁ ସମୟ ପାଉ ନଥିଲେ । ବେଠିଆ ନ ଖଟିଲେ ବାବୁମାନଙ୍କର ମାଡରେ ପିଠିରୁ ଛାଲ ଉଠିର ପଡ଼ୁଥିଲା କି ଦିନ କି ରାତି ଯେତେବେଳେ ବାବୁଙ୍କ ହୁକୁମ ହେଲେ ବେଠିଆ ଖଟିବାକୁ ବାଧ୍ୟ ହେଉଥିଲା । ମାଡ଼ ଖାଇବା ଭୟରେ ରାତି ବେଠିକରୁମାନେ ମୁଣ୍ଡତଳେ କାଉଡ଼ି ରଖି ଶୋଉଥିଲେ । କାଳେ ହୁକୁମ ପାଇବା ପରେ କାଉଡ଼ି ଖୋଜିବାରେ ସମୟ ଲାଗି ଡେରି ହେଲେ ମାଡ ଖାଇବାର ଭୟ ଥିଲା । ଅମୀନ, ପୋଲିସ ଫରେଷ୍ଟ ପ୍ରଭୃତି ବାବୁମାନଙ୍କ ପାଖରେ ଏ ଭଳି ୪.୫ ଜଣ ବେଠିଆ ରହୁଥାନ୍ତି । ଦଳେ ରୟତଙ୍କ ପାଳି ଶେଷ ହେଲେ ଅନ୍ୟ ଦଳେ ହାଜର ହୁଅନ୍ତି । ଏହି ବେଠିଆମାନଙ୍କୁ ବାବୁ-ବାବୁଆଣୀ ମାନେ ନିଜର ସମସ୍ତ ପ୍ରକାର କାମରେ ଲଗାଉଥିଲେ ।

କାଠ କାଉଡ଼ି—ରୟତମାନେ ବାବୁମାନଙ୍କ ବ୍ୟବହାରପାଇଁ ବିନା ମୂଲ୍ୟରେ କାଠ କାଉଡ଼ି ଆଣୁଥିଲେ । ବଣକୁ ଯାଇ ପେଟରେ ଓଦାକନା ଦେଇ ମୁଣ୍ଡରେ ଝାଳ ତୁଣ୍ଡରେ ମାରି କାଠ ହାଣି ବାବୁଙ୍କ ଘରେ ପହଞ୍ଚାଉ ଥିଲେ ।

ଘର ଛପର— ଜମିଦାରୀ ତଥା ବ୍ରିଟିଶ ସରକାରୀ କର୍ମଚାରୀଙ୍କ ଘର ଛପର ଓ ମରାମତି ଲୋକଙ୍କ ଦ୍ୱାରା ବିନା ପାରିଶ୍ରମିକରେ କରାଯାଉଥିଲା । ଏଥିପାଇଁ ବ୍ୟବହୃତ ଜିନିଷ ପତ୍ର ମଧ୍ୟ ରୟତମାନେ ସଂଗ୍ରହ କରି ଆଣିବାକୁ ପଡ଼ୁଥିଲା । ବର୍ଷସାରା କୃଷୀ ନିଜ ରକ୍ତକୁ ପାଣି କରି ଯେଉଁ ଧାନ ଫସଲ କରୁଥିଲା ସେଥିରୁ ନଡ଼ା ଆଣି ବାବୁ-ମାନଙ୍କ ସୁବିଧା ପାଇଁ ଘର ଛପର କରୁଥିଲା ।

ସପ୍ଲାଇ—ଯଦିଓ ଏହି ଶବ୍ଦଟି ଇଂରାଜୀ ଭାଷାର ତଥାପି ଇଂରେଜ ରାଜତ୍ୱରେ ଏହି ସପ୍ଲାଇ ଶବ୍ଦଟି କୋରାପୁଟିଆ ଭଲ ରୂପେ ବୁଝି ପାରୁଥିଲା । ଗାଁକୁ ଶଞ୍ଜନା, ଅମିନ, ରେଞ୍ଜର, ଫରେଷ୍ଟର ପ୍ରଭୃତି ବାବୁମାନେ ଆସିଲେ ଚଲାଣ, ଚଣ୍ଡା ନାଗରା ଦେଇ 'ସପ୍ଲାଇ' ବୋଲି ଡାକ ଦେଉଥିଲେ । ଏହି ସପ୍ଲାଇ ଡାକରା ହେବା ମାତ୍ରେ ରୟତମାନେ ନିଜ ଘରେ ଯାହା କିଛି ବୁଢ଼ିଲା, ଡାଲି, ପନପରିବା, ଛେଳି, କୁକୁଡ଼ା ଥାଏ ତାହା ନେଇ ନାୟକ ଘରେ ହାଜର ହେଉଥିଲେ । ଏଥିରୁ ନାୟକ ଗାଁଉଟିଆ

ନିଜ ପାଇଁ ମଧ୍ୟ ଲୋକଙ୍କ ଠାରୁ ଜିନିଷ ପତ୍ର ଆଦାୟ କରି ବାବୁମାନଙ୍କ ଖାଇବା ପିଇବାର ବ୍ୟବସ୍ଥା କରୁଥିଲେ । ବାବୁମାନଙ୍କ ଆଗମନରେ ରଯ୍ୟତ ଘର ସବୁ ସଫାଇ, ହୋଇ ଖାଲି ହୋଇଯାଉଥିଲା । ନିଜେ ଖୋଳରେ ବହି ରଯ୍ୟତଙ୍କୁ ଲ 'ସଫାଇ ଡ଼ାକରେ ବାବୁମାନଙ୍କର ସୁବ୍ୟବସ୍ଥା କରିବାକୁ ବାଧ୍ୟ ହେଉଥିଲେ ।

ଗଡ଼ମ—ବ୍ରିଟିଶ ସରକାରୀ କର୍ମଚାରୀମାନେ ନାୟକ ଗାଁଉଡିଆଁକୁ ଟଙ୍କାଏ ଦୁଇଟଙ୍କା ଦେଇ ଡ଼ାଲି ଯାଉଥିବା ଜିନିଷ ଯୋଗାଣ କରିବାକୁ ନିର୍ଦ୍ଦେଶ ଦିଅନ୍ତି । ନାୟକମାନେ ଟଙ୍କାକୁ ଗାଁର ରଯ୍ୟତଙ୍କ ମଧ୍ୟରେ ବାଣ୍ଟିଦେଇ ବାବୁମାନଙ୍କ ବରାଦ ଜିନିଷ ହାଜର କରାଇବାକୁ ହୁକମ୍ ଦିଅନ୍ତି । ଏହା ଗଡମ ଭାବେ ପରିଚିତ ଥିଲା । ଏହି ଗଡ଼ମ ଦ୍ୱାରା ଗୃହୀ ରଯ୍ୟତ ଶୀତ କାକର ସହ୍ୟ କରି ଯେଉଁ କେତେକ ନିଜ କୃଟ୍ୟୁର ପଖାଳର ତୃଷଣା ପାଇଁ ସାଇତି ରଖିଥାଏ ସେମାନ ବାଧ୍ୟ ହୋଇ ଗଡମ ଡ଼ାକରେ ଦେଇଦିଏ । ନିଜେ ନ ଖାଇ ବାବୁମାନଙ୍କୁ ଖୁଆଇ ସନ୍ତୋଷ ହେଉଥାଏ ।

ରୋଡ଼ କାମ —ସେତେବେଳେ ଗାଁଗଣ୍ଡାର ଶହ ଶହ ରଯ୍ୟତଙ୍କୁ ରାସ୍ତା କାମ କରିବାକୁ ବାଧ୍ୟ କରାଯାଉଥିଲା । ଏମାନଙ୍କୁ କାମ ବାବତର ପାରିଶ୍ରମିକ ମିଳୁ ନଥିଲା । ନିଜ ଘରରୁ ଖାଦ୍ୟ ଆଣି ରଯ୍ୟତମାନେ ରାସ୍ତା ପୋଖରୀ କାମ କରୁଥିଲେ ।

ଡୋଲି ବୁହା—ଗାଁର ରଯ୍ୟତମାନଙ୍କୁ ବାବୁ-ବାବୁଆଣୀଙ୍କ ଡ଼ୋଲି (ସବାରୀ) ଓଜନ କରି ଶହ ଶହ ମାଇଲ ଯିବାକୁ ପଡ଼ୁଥିଲା । ଅତି ଦୁଃଖର ବିଷୟ ଯେ ବଣ ଜଙ୍ଗଲ ରାସ୍ତାରେ ବାବୁ ବାବୁଆଣୀମାନଙ୍କୁ ପରିଶ୍ରା ଲାଗିଲେ ଡୋଲି ଉପରୁ ହିଁ ସେହି କାମଟି କରାଯାଉଥିଲା । ଯାହାକି ଡୋଲି ବୁହା ଲୋକଙ୍କ ଉପରେ ଗଙ୍ଗାଜଳ ପରି ଝରି ପଡ଼ୁଥାଏ । ବାବୁ ବାବୁଆଣୀଙ୍କ ନକଲି ଗଙ୍ଗାଜଳ ଗରିବ ହତଭାଗା ଆଦିବାସୀ ମୁଣ୍ଡରେ ପଡ଼ିବାବେଳେ ତା ଆଖିରୁ ତତଲା ଲୁହ ବୋହି ପଡ଼ୁଥିଲା ।

ଗୋଚର ଓ ଜଙ୍ଗଲ ପାନୁ—ପାନୁ ଅର୍ଥ ଟିକସ । ସେ ସମୟରେ ଗୋଚର ପାନୁ ଆଦାୟ କରାଯାଉଥିଲା । ଗୋରୁ ଗାଈ ବଣରେ ଚରିଲେ ମଧ୍ୟ ଗୋଚର ପାନୁ ଆଦାୟ ହେଉଥିଲା । ଗୃହୀଠାରୁ ଜଙ୍ଗଲ ପାନୁ ଆଦାୟର ବ୍ୟବସ୍ଥା ରହିଥିଲା ।

ଗାଁ ଖେଦା—କୌଣସି ଲୋକ ଅମାନିଆ ହେଲେ ଲମ୍ବା ବେଠିଆ ଖଟିବାକୁ ମନା କଲା ତ ନାୟକ ଗାଁଉଡିଆ ସେହି ଲୋକଙ୍କୁ ଗାଁରୁ ଖେଦ (ବାହାର) କରି ଦେଉଥିଲେ । ସେତେବେଳେ ଏହା ଯୋଗୁଁ ଲୋକଙ୍କୁ ଜୟପୁର ଜମିଦାର ଛାଡ଼ି ଅନ୍ୟତ୍ର ଯିବାକୁ ପଡ଼ୁଥିଲା ।

ମୁଣ୍ଡାଧର—ପୋଲିସ ଥାନାର କର୍ମଚାରୀମାନେ ଲୁଗାପଟା ବୋହିବା ପାଇଁ ମୁଣ୍ଡା ଧରୁଥିଲେ । ସେମାନେ ଯେଉଁପଟେ ଯାଆନ୍ତି ରାସ୍ତାରେ ତାଙ୍କର ଆଖି ଯାହା ଉପରେ ପଡ଼େ ତାହାକୁ ମୁଣ୍ଡା ଧରାଇ ସଙ୍ଗରେ ନିବାକୁ ହୁକୁମ ଦିଅନ୍ତି । ଖାଇବା ପିଇବାକୁ ମୁଣ୍ଡା-ଧରାଙ୍କୁ କିଛି ମିଳୁ ନଥିଲା । ତେଣୁ ଲୋକେ ମୁଣ୍ଡାଧର ପୋଲିସବାଲାଙ୍କୁ ଦେଖିଲେ ଲୁଚି ଛପି ରହୁଥିଲେ ।

କୋରାପୁଟିଆଙ୍କୁ ସେତେବେଳର ଶାସନ ପଙ୍ଗୁ କରି ଦେଇଥିଲା । ପେଟକୁ ଭଲ କରି ଦିମୁଠା ଖାଇବା ଲଜ୍ଜା ନିବାରଣ ପାଇଁ ଦେହକୁ ଖଣ୍ଡେ କପଡ଼ା ମିଳିବା କଷ୍ଟ ହୋଇ ପଡ଼ୁଥିଲା । ଗୋଟିଏ ଗାମୁଛାରେ ତାର ବର୍ଷ କଟି ଯାଉଥିଲା । କୋରାପୁଟିଆ ସାମାଜିକ, ଆର୍ଥିକ, ଶିକ୍ଷା ଓ ପ୍ରଶାସନର ନିର୍ଯ୍ୟାତନାରେ ସଢ଼ି ହୋଇ ଅତି ଦୟନୀୟ ଅବସ୍ଥାରେ ଜୀବନ ବିତାଉଥିଲା । ବେଠି ଓ ବଡ଼ମ ପ୍ରଥା କୋରାପୁଟିଆଙ୍କୁ ଦିନ୍‌ଠୁ ଅଧିକ ବ୍ୟଥିତ କରୁଥିଲା ।



୧୯୦୨ ମସିହାରେ ଉତ୍କଳ ସମ୍ମିଳନୀର ଶୁଭାରମ୍ଭ ହୋଇ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଦାବୀକୁ ଏକ ସ୍ୱତନ୍ତ୍ର ରୂପ ଦିଆଯାଇଥିଲା । କ୍ରମେ ଏହି ଦାବୀ ପ୍ରବଳ ହେବାକୁ ଲାଗିଥିଲା । ଜୟପୁରରେ ମଧ୍ୟ ଉତ୍କଳ ସମ୍ମିଳନୀର ବୈଠକ ବସି ଏହି ମାଲଅଞ୍ଚଳକୁ ନୂତନ ଓଡ଼ିଶାରେ ମିଶ୍ରଣ କରିବାକୁ ଦାବୀ କରାଯାଇଥିଲା ।

ଗୋଲ୍ ଟେବୁଲ୍ ବୈଠକରେ ଓଡ଼ିଆ ପ୍ରତିନିଧିମାନଙ୍କ ଦୃଢ଼ ଦାବୀ ଯୋଗୁଁ ୧୯୩୧ ମସିହାରେ ବ୍ରିଟିଶ ସରକାର ଓଡ଼ନେଲ କମିଟି ନିଯୁକ୍ତ କଲେ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶରେ କେଉଁ କେଉଁ ଅଞ୍ଚଳ ମିଶ୍ରଣ ହେବ ସେ ସମ୍ପର୍କରେ ଏହି କମିଟି ଅନୁଧ୍ୟାନ କରି ନିଜ ରିପୋର୍ଟ ପ୍ରଦାନ କରିଥିଲେ । ଓଡ଼ନେଲ କମିଟି ରିପୋର୍ଟରେ ଓଡ଼ିଶା ସହ ବିଶାଖାପାଟଣାମ୍ ଏଜେନ୍ସିର ମିଶ୍ରଣ ନେଇ ଦୃଢ଼ ଯୁକ୍ତି ସହ ନିଜର ସୁପାରିଶ ଦେଇଥିଲେ ।

୨୪-୧୨-୧୯୩୨ ସାଲରେ ଅନୁଷ୍ଠିତ ତୃତୀୟ ଗୋଲ ଟେବୁଲ ବୈଠକରେ ଭାରତ ସଚିବ ସାର ସାମୁଏଲ ହୋର ଜୟପୁର ଓ ପାରଳାଖେମୁଣ୍ଡି ଜମିଦାରୀକୁ ବାଦ ଦେଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ସୀମା ସରହଦ ଘୋଷଣା କରିଥିଲେ । ଏହା ଓଡ଼ିଆଙ୍କ ମଧ୍ୟରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରିଥିଲା । ପରେ ୧୩-୧-୩୩ ସାଲରେ ପାରଳା ମହାରାଜାଙ୍କ ନିବେଦନ କ୍ରମେ ଭାରତ ସଚିବ ସାର ସାମୁଏଲ ହୋର ସୀମା ରେଖାର ପୁନର୍ବିଚାର ପାଇଁ ଜଏଣ୍ଟ ପାର୍ଲିଆମେଣ୍ଟାରୀ ସିଲେକ୍ଟ କମିଟି ନାମରେ ଏକ କମିଟି ଗଠନ କରିଥିଲେ । କମିଟି ଉଭୟ ( ଓଡ଼ିଆ, ତେଲୁଗୁ ) ପକ୍ଷର ଦାବୀ ଶୁଣିବା ପରେ ଜୟପୁର ଜମିଦାରୀକୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶରେ ମିଶ୍ରଣ କରିବାକୁ ଶିଘ୍ର ଘୋଷଣା କରିଥିଲେ ।

କୋରାପୁଟ ମାଲ ଅଞ୍ଚଳକୁ ଓଡ଼ିଶାରେ ମିଶ୍ରଣ କରିବା ବିରୁଦ୍ଧରେ ତେଲୁଗୁମାନେ ସମସ୍ତ ପ୍ରକାର ଉଦ୍ୟମ କରିଥିଲେ । ପ୍ରବଳ ବାଦାନୁବାଦର ବାତାବରଣ ସୃଷ୍ଟି

ହୋଇଥିଲା । ଜଏଣ୍ଟ ପାର୍ଲିଆମେଣ୍ଟାରୀ ସିଲେକ୍ଟ କମିଟିର ପ୍ରସ୍ତାବ ଅନୁଯାୟୀ କୋରାପୁଟ ଏଜେନ୍ସି ଗୁଣୁପୁର ଓ ରାୟଗଡ଼, ନୂଆପଡ଼ା ଓ ବିଷମକଟକ ଏଜେନ୍ସିକୁ ଓଡ଼ିଶାରେ ମିଶ୍ରଣ କରାଯାଇଥିଲା । ଓଡ଼ନେଲ କମିଟିର ସୁପାରିଶ କ୍ରମେ କୋରାପୁଟ ଏକ ଜିଲ୍ଲା ଏବଂ କୋରାପୁଟ ଏହି ଜିଲ୍ଲାର ସଦରମହକୁମା ହୋଇଥିଲା ।

କୋରାପୁଟକୁ ଶାସନ କେନ୍ଦ୍ର ବା ସଦରମହକୁମା କରିବା ପଛରେ କେତୋଟି କାରଣ ନିହିତ ଥିଲା । ପୂର୍ବରୁ ଏହା ଏକ ସବ୍‌ଡିଭିଜନ ସଦରମହକୁମା ଥିଲା ଓ ଭିଜାଗ ଜିଲ୍ଲାର ଶାସନ କେନ୍ଦ୍ର ଥିଲା । ସ୍ୱାସ୍ଥ୍ୟ ପକ୍ଷରେ ଏକ ଅନୁକୂଳ ସ୍ଥାନ ରୂପେ ମଧ୍ୟ ସମ୍ମୁଖରେ କୋରାପୁଟ ପରିଚିତ ଥିଲା । ଏ ସବୁ ଦୃଷ୍ଟିରୁ ଓଡ଼ନେଲ କମିଟି ଏହାକୁ ଜିଲ୍ଲାର ସଦରମହକୁମା କରିବାକୁ ସୁପାରିଶ କରିଥିଲେ ଓ ତାହା କାର୍ଯ୍ୟକାରୀ ହୋଇଥିଲା ।

ଜଏଣ୍ଟ ପାର୍ଲିଆମେଣ୍ଟାରୀ ସିଲେକ୍ଟ କମିଟିର ରିପୋର୍ଟ ପ୍ରକାଶିତ ହେବା ପରେ ତେଲୁଗୁମାନେ ଏହା ବିରୁଦ୍ଧରେ ବିଭିନ୍ନ ସ୍ଥାନରେ ସଭା ସମିତି କରି ଜନମତ ନିଜ ପକ୍ଷରେ ସୃଷ୍ଟି କରିବାକୁ ଚେଷ୍ଟା କରିଥିଲେ । ଏଥିପାଇଁ ବିଭିନ୍ନ ପ୍ରକାର ମିଥ୍ୟା ପ୍ରଚାରର ଆଶ୍ରୟ ନେଇଥିଲେ । ନୂତନ ଓଡ଼ିଶାରେ ମିଶିଗଲେ ମାଳଅଞ୍ଚଳଟି ପୁରାପୁରି ଅବହେଳିତ ହେବ । କୌଣସି ପ୍ରକାର ଉନ୍ନୟନ କାର୍ଯ୍ୟ ହୋଇପାରିବ ନାହିଁ । ଜୟପୁର — ସାଲୁରୁ ଘାଟ ରାସ୍ତା ତିଆରି ଓଡ଼ିଶା ସରକାର ଉପଯୁକ୍ତ ଅର୍ଥ ବ୍ୟୟ କରିପାରିବେ ନାହିଁ । ଜମିଦାରୀ ଉପରେ ରୟତମାନଙ୍କ ସ୍ୱତ୍ୱ ଆଉ ରହିବ ନାହିଁ । ଏଜେନ୍ସିର ମିଶ୍ରଣ ଯୋଗୁଁ ଏହା ଓଡ଼ିଶା ସରକାରଙ୍କ ଉପରେ ଏକ ଆର୍ଥିକ ଭାର ହେବ ପ୍ରଭୃତି ଏହି ମିଥ୍ୟା ଯୁକ୍ତିର ପ୍ରସଙ୍ଗରେ କୁହାଯାଇଥିଲା ।

୯-୧୨-୩୪ ତାରିଖରେ ପାର୍ଲାକିମେଡ଼ି ତାଲୁକାର ତେଲୁଗୁମାନଙ୍କ ପକ୍ଷରୁ ମେଲିଅପୁଟ ଠାରେ ଏକ ସମ୍ମିଳନୀ ଅନୁଷ୍ଠିତ ହୋଇ ଜଏଣ୍ଟ ପାର୍ଲିଆମେଣ୍ଟାରୀ କମିଟିର ପ୍ରସ୍ତାବକୁ ବିରୋଧ କରାଯାଇଥିଲା । ଏହି ସମ୍ମିଳନୀରେ ସେମାନେ ତାଙ୍କ ଅଞ୍ଚଳ ସମେତ ଜୟପୁର ଜମିଦାରୀକୁ ଓଡ଼ିଶାରେ ମିଶ୍ରଣ ନ କରିବାକୁ ଦାବୀ କରିଥିଲେ । ତେଲୁଗୁମାନେ ଏକତ୍ରିତ ହେବାକୁ ଏବଂ ଏଥିପାଇଁ ଆର୍ଥିକ ସାହାଯ୍ୟ ଦେଇ ତେଲୁଗୁ ସ୍ୱାର୍ଥ ରକ୍ଷା କରିବା ପାଇଁ ସମସ୍ତଙ୍କୁ ସମ୍ମିଳନୀରେ ଆହ୍ୱାନ ଦିଆଯାଇଥିଲା ।

୨୩-୧୨-୩୪ ତାରିଖରେ ବିଶାଖାପାଟଣା ଜିଲ୍ଲା ତେଲୁଗୁମାନଙ୍କ ପକ୍ଷରୁ ଅନ୍ୟ ଏକ ସମ୍ମେଳନ ବିଶାଖାପାଟଣାସ୍ଥ ଭିକ୍ଟୋରିଆ ଡାଇମଣ୍ଡ ଜୁବୁଲି ଟାଉନହଲ ଠାରେ ରାଜାସାହେବ ଏସ୍‌. ସୀତାପତି ପାତ୍ରୁଲୁଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ଏଥିରେ ଜୟପୁର ଜମିଦାରୀ ଅନ୍ତର୍ଗତ ଅଳ୍ପ ସଂଖ୍ୟକ ତେଲୁଗୁ ଯୋଗ ଦେଇଥିଲେ ।

ସଭାପତି ପାନ୍ନେଲ୍ ତାଙ୍କ ଭାଷଣରେ ଓଡ଼ିଆଙ୍କ ପାଇଁ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାକୁ ଯାଇ ତେଲୁଗୁ ସ୍ୱାର୍ଥକୁ ବଳି ଦିଆଯାଉଅଛି ଏବଂ ଜୟପୁର ଜମିଦାରୀକୁ ଓଡ଼ିଶାକୁ ହସ୍ତାନ୍ତର କରାଯାଉଅଛି ବୋଲି ଅଭିଯୋଗ କରିଥିଲେ । ଏହି ସମ୍ମିଳନୀରେ ହିଁ ଲଣ୍ଡନକୁ ଏକ ପ୍ରତିନିଧି ଦଳ ପଠାଇ ମିଶ୍ରଣର ବିରୋଧ କରିବାକୁ ନିଷ୍ପତ୍ତି ନିଆଯାଇଥିଲା ।

ଜୟପୁର ଏଜେନସିରେ ମଧ୍ୟ ତେଲୁଗୁମାନଙ୍କ ତରଫରୁ ବିଭିନ୍ନ ସ୍ଥାନରେ ସଭା ସମିତି କରାଯାଇ ଓଡ଼ିଶାରେ ମିଶ୍ରଣ ନ କରିବାକୁ ଦାବୀ ଜଣାଇଥିଲେ ।

ଓଡ଼ିଆମାନଙ୍କ ପକ୍ଷରୁ ବିଭିନ୍ନ ସ୍ଥାନରେ ସଭା ସମିତି କରାଯାଇ ଜଏଣ୍ଟ ପାର୍ଲିଆମେଣ୍ଟାରୀ ସିଲେକ୍ଟ କମିଟି ପ୍ରସ୍ତାବକୁ ସ୍ୱାଗତ ଜଣାଇ ତେଲୁଗୁ ଉଦ୍ୟମକୁ ନିନ୍ଦା କରାଯାଇଥିଲା ।

ଏଠାରେ ବର୍ଣ୍ଣାଇବା ଉଚିତ ହେବ ଯେ ଜୟପୁର ରାଜା ରାମଚନ୍ଦ୍ର ଦେଓଙ୍କ ମୃତ୍ୟୁ ପରେ ରାଜଗାଦୀ ପାଇଁ ତେଲୁଗୁମାନେ ଚକ୍ରାନ୍ତ କରିଥିଲେ । ତେଲୁଗୁ ସ୍ୱାର୍ଥକୁ ସୁହାଇଲା ଭଳି କୌଣସି ଜଣେ ରାଜବଂଶୀୟଙ୍କୁ ରାଜଗାଦୀରେ ବସାଇବାକୁ ସେମାନେ ଉଦ୍ୟମ କରି ସଫଳ ହୋଇଥିଲେ । ରାମଚନ୍ଦ୍ର ଦେଓଙ୍କ ମୃତ୍ୟୁ ପରେ ରାଜଗାଦୀ ପାଇଁ ବାଦାନୁବାଦ ଉପୁଜି ଥିଲା । ରାମଚନ୍ଦ୍ର ଦେଓଙ୍କ ପୁତ୍ର ନଥିବାରୁ ତାଙ୍କ କନ୍ୟା ମଣି-ଦେଓଙ୍କୁ ଜୟପୁର ରାଜଗାଦୀରେ ଆରୂଢ଼ କରିବା ପାଇଁ ଜୟପୁର ପ୍ରଜା ଚାହିଁଥିଲେ । କିନ୍ତୁ ତେଲୁଗୁଙ୍କ ଇଚ୍ଛା ବିପକ୍ଷରେ କୌଣସି ପଦକ୍ଷେପ କାର୍ଯ୍ୟକାରୀ ହେବା ସମ୍ଭବ ନଥିଲା । ବିକ୍ରମ ଦେବ ବର୍ମା ରାଜା ହେଲେ ଏବଂ ଏଥିରେ ମାନ୍ଦ୍ରାଜ ଗଭର୍ଣ୍ଣର ଓ ତେଲୁଗୁଙ୍କ ଅବଦାନ ଯଥେଷ୍ଟ ଥିଲା । ବିକ୍ରମ ଦେବ ଅମଳରେ ତେଲୁଗୁ ସ୍ୱାର୍ଥ ସୁରକ୍ଷିତ ହୋଇ ରହିଥିଲା । ବିଶାଖପାଟଣାର ଏ. ଭି. ଏମ୍ ମହାବିଦ୍ୟାଳୟକୁ ବହୁତ ଆର୍ଥିକ ସାହାଯ୍ୟ ମିଳିଲା । ଆନ୍ଧ୍ର ବିଶ୍ୱବିଦ୍ୟାଳୟ ମଧ୍ୟ ଜମିଦାରୀ ଦ୍ୱାରା ତ୍ରିଶ ବର୍ଷ ବିଭିନ୍ନ ପ୍ରକାର ସାହାଯ୍ୟ ପାଇ ଉପକୃତ ହେଲା । ତେଲୁଗୁଙ୍କ ଦ୍ୱାରା ରାଜା ଉଚ୍ଚ ପ୍ରଶଂସିତ ହେଉଥିଲେ । ଆନ୍ଧ୍ର ବିଶ୍ୱବିଦ୍ୟାଳୟ ତାଙ୍କୁ ଉପାଧି ମଧ୍ୟ ପ୍ରଦାନ କଲେ । ଏ ପଟେ କୋରାପୁଟ ଜିଲ୍ଲାର ଗୋଟିଏ ସ୍କୁଲ ମଧ୍ୟ ରାଜାଙ୍କ ଆର୍ଥିକ ସାହାଯ୍ୟ ପାଇ ନ ଥିଲା ।

ଯେ ଯାହାହେଉ ତେଲୁଗୁର ପ୍ରବଳ ବିରୋଧ ସତ୍ତ୍ୱେ ବି କୋରାପୁଟ ଏଜେନସି ଡିଭିଜନ ଏବଂ ରାୟଗଡ଼, ଗୁଣୁପୁର ଓ ବିଷମକଟକ ଏଜେନସି ଓଡ଼ିଶାରେ ମିଶ୍ରଣ ହୋଇପାରିଥିଲା । ଓଡ଼ିଶାର ଛ'ଟି ଜିଲ୍ଲା ମଧ୍ୟରୁ କୋରାପୁଟ ଗୋଟିଏ ହେଲା ।



# ୪

ପୂର୍ବ ଅଧ୍ୟାୟଗୁଡ଼ିକରେ କୋରାପୁଟ ଜିଲ୍ଲାର ଅଧିବାସୀ, ଇତିହାସ, ସୁଙ୍କ୍ରଚଳନ, ଇଂରେଜ ରାଜତ୍ୱରେ ସେମାନଙ୍କ ସାମାଜିକ ଅବସ୍ଥା ଓ ଶାସନ ବ୍ୟବସ୍ଥାରେ ଏକ ଚମ୍ବୁକ ଚିତ୍ର ଦିଆଯାଇଛି । କୋରାପୁଟ ଜିଲ୍ଲା ଗଠିତ ହେବା ପରେ ଯେଉଁ କେତେକ ଉତ୍କଳ ସମ୍ମିଳନୀର ଉଦ୍ୟୋକ୍ତା ଏହି ଜିଲ୍ଲାରେ ବିଶେଷ ଭୂମିକା ଗ୍ରହଣ କରିଥିଲେ, ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କ ପରବର୍ତ୍ତୀ କାର୍ଯ୍ୟ 'ସ୍ୱରାଜ' ପାଇଁ ଲାଗି ନଥିଲା । ତେବେ କଂଗ୍ରେସ ସଙ୍ଗଠନର କାର୍ଯ୍ୟ ଅନ୍ୟ ପ୍ରକାର ଲୋକଙ୍କ ଦ୍ୱାରା ଜିଲ୍ଲାରେ ଆରମ୍ଭ ହୋଇଥିଲା ।

୧୯୩୦ ମସିହା ପର୍ଯ୍ୟନ୍ତ କୋରାପୁଟ ଜିଲ୍ଲାରେ କଂଗ୍ରେସର ବାର୍ତ୍ତା ପହଞ୍ଚି ନଥିଲା । ତେବେ କୋରାପୁଟ ଜିଲ୍ଲାର ବିଭିନ୍ନ ସ୍ଥାନରେ ଖଦୀର ପ୍ରଚାର ଓ ପ୍ରସାର କାର୍ଯ୍ୟ ଆରମ୍ଭ ହୋଇସାରିଥିଲା । ଖଦଡ଼ ପ୍ରତି କେତେକ ଲୋକଙ୍କ ଆଗ୍ରହ ଓ ଆଦର ଜନ୍ମିବାକୁ ଲାଗିଥିଲା । ନରସିଂହ ସାହୁ ଜୟପୁର ଠାରେ ଏକ ଖଦୀ ଭଣ୍ଡାର ପ୍ରତିଷ୍ଠା କରି ଖଦଡ଼ ବିକ୍ରି ମାଧ୍ୟମରେ କଂଗ୍ରେସର ପ୍ରାରମ୍ଭିକ କାର୍ଯ୍ୟ ଆରମ୍ଭ କରିଦେଇଥିଲେ ।

କୋରାପୁଟ ଜିଲ୍ଲାରେ କଂଗ୍ରେସ କାର୍ଯ୍ୟାବଳୀର ଆଲୋଚନା ହିଁ କୋରାପୁଟିଆ ସ୍ୱରାଜ ସଂଗ୍ରାମର ଇତିହାସ । କୋରାପୁଟ ଜିଲ୍ଲାରେ କଂଗ୍ରେସ ଅବିରାମ ଭାବରେ ବ୍ରିଟିଶ ଗୋରା ସରକାର ବିରୁଦ୍ଧରେ ଯେଉଁ ସଂଗ୍ରାମ କରିଥିଲା ତାହା ହିଁ ଏ ଜିଲ୍ଲାର ସ୍ୱାଧୀନତା ସଂଗ୍ରାମ । ଯଦିଓ କୋରାପୁଟ ଏକ ଅନୁନ୍ନତ ଅଶିକ୍ଷିତ ଜିଲ୍ଲା ଥିଲା, ତଥାପି କଂଗ୍ରେସ କର୍ମୀମାନଙ୍କ କାର୍ଯ୍ୟ ଏ ଜିଲ୍ଲା ବାସୀଙ୍କୁ ସଚେତନ କରି କଂଗ୍ରେସ ପତାକା ତଳେ ଏକଜୁଟ କରାଇ ଗୋରା ସରକାର ବିରୁଦ୍ଧରେ ଲଢ଼େଇ କରିପାରିଥିଲା । ଏ ଜିଲ୍ଲାରେ କଂଗ୍ରେସର ଜନ୍ମ ଓ ତାର ଜୀବନ ଭିତରେ ଲୋକଙ୍କ ମନରେ ରାଜନୈତିକ ଚେତନା ଜାଗ୍ରତ କରିବାର ପୁରୋଧା ହେଉଛନ୍ତି ରାଧାକୃଷ୍ଣ ବିଶ୍ୱାସରାୟ । ତାଙ୍କର ଜୀବନ ସହ କୋରାପୁଟିଆ କଂଗ୍ରେସର ସ୍ୱରାଜ ସଂଗ୍ରାମ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ।

ରାଧାକୃଷ୍ଣ ବିଶ୍ୱାସରାୟ ନବରଙ୍ଗପୁର ତାଲୁକା ଅଫିସରେ କିରାଣି କରୁଥାନ୍ତି । ୧୯୨୯ ଜୁଲାଇ ମାସରେ ବିଶ୍ୱାସରାୟ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର

ସଭାପତି ଗୋପବନ୍ଧୁ ଚୌଧୁରୀଙ୍କ ନିକଟକୁ ଏକ ଗୁପ୍ତ ପତ୍ର ଲେଖିଲେ । ଏହି ପତ୍ର ଲିଖନ ପରେ ପରେ ଏ ଜିଲ୍ଲାରେ କଂଗ୍ରେସ ପ୍ରତିଷ୍ଠାର ଭିତ୍ତି ପଡ଼ିଥିଲା । ଉତ୍ତରରେ ପ୍ରଦେଶ କଂଗ୍ରେସ ସଭାପତି ତଥା ଲବଣ ସତ୍ୟାଗ୍ରହର ଅଧିନାୟକ ଗୋପବନ୍ଧୁ ଚୌଧୁରୀ ବିଶ୍ୱାସରାୟଙ୍କୁ ବ୍ରହ୍ମପୁରଠାରୁ ଇସ୍ତଫା ଦେଇ ଗଞ୍ଜାମର ସତ୍ୟାଗ୍ରହୀଙ୍କ ନେତୃତ୍ୱ ନେଉଥିବା ନିରଞ୍ଜନ ପଟ୍ଟନାୟକଙ୍କ ସହିତ ସମ୍ପର୍କ ସ୍ଥାପନ କରିବାକୁ ପରାମର୍ଶ ଦେଇଥିଲେ । ବିଶ୍ୱାସରାୟ ଅନ୍ୟ କେତେଜଣ ସହଯୋଗୀଙ୍କ ସହ ଗଞ୍ଜାମ ଯାଇ ଲବଣ ସତ୍ୟାଗ୍ରହ ବିଷୟରେ ଶିକ୍ଷା ପାଇଥିଲେ ।

ଦିବାକର ପଟ୍ଟନାୟକ ଓ ରାଧାକୃଷ୍ଣ ବିଶ୍ୱାସରାୟଙ୍କ ଉଦ୍ୟମ କ୍ରମେ କୋରାପୁଟ ଜିଲ୍ଲାରୁ ପ୍ରାୟ ୫୦ ଜଣଙ୍କୁ ବ୍ରହ୍ମପୁର ସତ୍ୟାଗ୍ରହୀ ଶିବିରକୁ ତାଲିମ ଗ୍ରହଣ ପାଇଁ ପଠା ଯାଇଥିଲା । ଏହି ସମୟ ବେଳକୁ ନରସିଂହ ସାହୁ ଗିରଫ ହୋଇଯାଇଥିଲେ ଏବଂ ପରେ ପରେ ଦିବାକର ପଟ୍ଟନାୟକ ଓ ରାଧାକୃଷ୍ଣ ବିଶ୍ୱାସରାୟଙ୍କୁ ଗିରଫ କରି କୋରାପୁଟ ଜେଲରେ ରଖାଯିବା ପରେ ବିଶାଖାପାଟଣା ଜେଲକୁ ସ୍ଥାନାନ୍ତରିତ କରାଯାଇଥିଲା । ୧୮୧୯ ମସିହା ମାଡ୍ରାସ ପ୍ରଦେଶ ବନ୍ଦୀ ନିୟମ—୨ ଅନୁଯାୟୀ ଏହି ତିନିଜଣଙ୍କୁ ଅନ୍ତରିଣ ବନ୍ଦୀ ଭାବରେ ଦୀର୍ଘ ଦିନ ରାଜମହେନ୍ଦ୍ରୀ ଜେଲରେ କଟାଇବାକୁ ପଡ଼ିଥିଲା ।

ମାଡ୍ରାସ ବିଧାନ ପରିଷଦ ଓ କେନ୍ଦ୍ରୀୟ ବିଧାନ ପରିଷଦରେ ବହୁ ବାଦାନୁବାଦ ଓ ବିଚାର ପରେ ୧୯୩୪ ମସିହାରେ ସେମାନେ ଖୋଲାସ ହୋଇଥିଲେ । ଓଡ଼ିଶା ଓ ଆନ୍ଧ୍ର ପ୍ରଦେଶ କଂଗ୍ରେସ କମିଟି କୋରାପୁଟିଆ ତିନିଜଣ ବନ୍ଦୀଙ୍କୁ ଖୋଲାସ କରିବାକୁ ପ୍ରାଣପଣେ ଉଦ୍ୟମ କରିଥିଲେ । ପଟ୍ଟନାୟକ ଓ ବିଶ୍ୱାସରାୟ ଛୁଟି ପାଇଥିଲେ । କିନ୍ତୁ ନରସିଂହ ସାହୁଙ୍କୁ ବନ୍ଦୀ ହିସାବରେ ଆଉ କେତେଦିନ ରହିବାକୁ ପଡ଼ିଥିଲା ।

ଏହାପରେ ବିଶ୍ୱାସରାୟ କଂଗ୍ରେସ ବିଷୟ ନେଇ ଜିଲ୍ଲାର ଅନ୍ୟାନ୍ୟ ଲୋକଙ୍କ ସହ ସମ୍ପର୍କ ସ୍ଥାପନ କରିଥିଲେ । ଜୟପୁର ଠାରେ ସଦାଶିବ ତ୍ରିପାଠୀଙ୍କ ଏକ ଘର ଥାଏ । ସେଠାରେ ବିଭିନ୍ନ ସମୟରେ ବୈଠକ ଅନୁଷ୍ଠିତ ହେଉଥିଲା । ଏହି ବୈଠକରେ ରାଧାକୃଷ୍ଣ ବିଶ୍ୱାସରାୟଙ୍କ ସହ କଥାବାର୍ତ୍ତା କରିବା ପାଇଁ ରାଧାମୋହନ ସାହୁ, ସଦାଶିବ ତ୍ରିପାଠୀ, ଲକ୍ଷ୍ମୀଚନ୍ଦ୍ର ଦାସ, ମହମ୍ମଦ ବାଜୀ ପ୍ରମୁଖ ଏକତ୍ରିତ ହୁଅନ୍ତି । ଏମାନଙ୍କ ମଧ୍ୟରେ ଯୋଗ ସୂତ୍ର କ୍ରମଶଃ ଘନିଭୂତ ହୋଇ କଂଗ୍ରେସ ପ୍ରତିଷ୍ଠା ପାଇଁ ପଥ ସୁଗମ ହୋଇଯାଇଥିଲା । କ୍ରମେ ଜିଲ୍ଲାର ବିଭିନ୍ନ ସ୍ଥାନରୁ କଂଗ୍ରେସ ସଗଠନ ପାଇଁ କର୍ମୀଙ୍କ ସଂଖ୍ୟା ବଢ଼ିବାରେ ଲାଗିଥିଲା ।

କଟକଠାରେ ଅନୁଷ୍ଠିତ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ଏକ ବୈଠକରେ କୋରାପୁଟ ଜିଲ୍ଲାରେ କଂଗ୍ରେସ ସଙ୍ଗଠନ ଓ କୋରାପୁଟ ଜିଲ୍ଲା କଂଗ୍ରେସ କମିଟି ଗଠନ ପାଇଁ ଏକ ସବ୍‌କମିଟି ଗଠନ କରିବାକୁ ପ୍ରସ୍ତାବ ଗୃହୀତ ହୋଇଥିଲା । ଶଶିଭୂଷଣ ରଥ, ରାଧାକୃଷ୍ଣ ବିଶ୍ୱାସରାୟ, ଓ ଦିବାକର ପଟ୍ଟନାୟକ ଏହି ସବ୍‌କମିଟିର ସଭ୍ୟ ମନୋନୀତ ହୋଇଥିଲେ । କୋରାପୁଟ ଜିଲ୍ଲା କଂଗ୍ରେସ ଓ ଅନ୍ୟାନ୍ୟ ସ୍ଥାନର କଂଗ୍ରେସ କମିଟିମାନ ଗଠନ କରିବା ବିଷୟରେ ଏହି ସବ୍‌କମିଟି କ୍ଷମତା ପାଇଥିଲା ।

ସର୍ବ ପ୍ରଥମ ଥର ପାଇଁ କୋରାପୁଟ ଜିଲ୍ଲା କଂଗ୍ରେସ କମିଟି ରାଧାକୃଷ୍ଣ ବିଶ୍ୱାସରାୟଙ୍କ ସଭାପତିତ୍ୱରେ ଗଠିତ ହୋଇଥିଲା । ରାଧାମୋହନ ସାହୁ ଡି. ସି. ସି.ର ସମ୍ପାଦକ ହୋଇଥିଲେ । ସେ ଦୁହେଁ ଏହି ପଦବୀରେ ଦେଶ ସ୍ୱାଧୀନ ହେବା ପର୍ଯ୍ୟନ୍ତ ରହିଥିଲେ । ଜିଲ୍ଲାର ବିଭିନ୍ନ ସ୍ଥାନରେ ପ୍ରମୁଖ କଂଗ୍ରେସ ଲୋକଙ୍କୁ ନେଇ କମିଟିମାନ ସର୍ବପ୍ରଥମଥର ପାଇଁ ଗଠିତ ହୋଇଥିଲା ।

୧) ନବରଙ୍ଗପୁର କଂଗ୍ରେସ କମିଟି—ଲକ୍ଷ୍ମୀଚନ୍ଦ୍ର ଦାସ, ଅଜାଜୀ ରାଓ, ମହମ୍ମଦ ବାର୍କ, ସଦାନନ୍ଦ ମହାନ୍ତି, ମାଧବ ପ୍ରଧାନ, ଓ ହରେକୃଷ୍ଣ ମାଝୀ ।

୨) କୋଟପାଡ (ପ୍ରାଥମିକ) କଂଗ୍ରେସ କମିଟି—ବିଶ୍ୱନାଥ ମହାପାତ୍ର, କପିଳ ପାତ୍ର, ସର୍ଯ୍ୟନାରାୟଣ ମାଝୀ, ଗୋପାଳ ପଟ୍ଟନାୟକ, ଡମ୍ବରୁ ମାଝୀ ଓ ସଦାଶିବ ତ୍ରିପାଠୀ ।

୩) ଉମରକୋଟ (ପ୍ରାଥମିକ) କଂଗ୍ରେସ କମିଟି—ରବିସିଂ ମାଝୀ, ବଳରାମ କଲାର, ସରବୁ ଗୌଡ ଓ ଗୁରୁ ଗୌଡ ।

୪) ଝଗିସଲପା (ପ୍ରାଥମିକ) କଂଗ୍ରେସ କମିଟି— ଆନନ୍ଦ ବେହେରା, ବଳରାମ ନାଏକ, ସନୁ ଭିଶଣି ।

୫) ଜନ୍ଦପୁର-- ଭଗବାନ ଷେମୁଣ୍ଡ୍ର, ଗଙ୍ଗାଧର ଝୋଲା, ମଧୁ ସେଠୀ, କେଶବ ନାୟକ ଓ ଗୋପି ହିସ୍ଥାଙ୍ଗ।

୬) ଡାବୁଗାଁ।—ସନ୍ତୁମାଝୀ, ସୁନାଧର ମାଝୀ ଓ ଗଇଧର ଜାଙ୍ଗ।

୭) ଭୈରଗୁଡା—ଲକ୍ଷ୍ମଣ ଖୋରା, ଅର୍ଜ୍ଜୁନ ଖୋରା ଓ ପୀତାମ୍ବର ଖିଲ।

୮) ସୁନାବେଡ଼ା—ଦୁର୍ଲ୍ଲଭ ହନ୍ତାଲ, ରାମଚନ୍ଦ୍ର ନାୟକ, ବଲ୍ଲଭ ଖୋରା, ମଧୁ ପାଙ୍ଗୀ,

୯) ବଡ଼ ମାରଲା -- ମାଲୁ ସାନ୍ତା, ମୁସୁର ସାନ୍ତା, ଜଗବନ୍ଧୁ ହନ୍ତାଲ, ଧନୁ ସାନ୍ତା ଓ କରୁମା ସାନ୍ତା।

୧୦) ଦଶମନ୍ତପୁର—ଦୀନବନ୍ଧୁ ଦାସ ପଦ୍ମଲୋଚନ ନାୟକ, ଚକ୍ରଧର ନାୟକ ଓ ଜନାର୍ଦ୍ଦନ ସିଂ।

୧୧) ଗୁଣୁପୁର—ପ୍ରହଲ୍ଲାଦ ପାଣିଗ୍ରାହୀ, ଭଗବାନ ସେନାପତି, ବିଶ୍ୱନାଥ ପଟ୍ଟନାୟକ, ଓ ପୁରନାରାୟଣ।

୧୨) ଜୟପୁର—ରାଧାକୃଷ୍ଣ ବିଶ୍ୱାସରାୟ, ରାଧାମୋହନ ସାହୁ, ନୀଳକଣ୍ଠ ପାତ୍ର, ଦାମୋଦର ସାହୁ ଓ କୃଷ୍ଣ ସାହୁ ଆଦି।

୧୯୩୮ ମସିହା ଶେଷରେ କୋରାପୁଟ ଜିଲ୍ଲା କଂଗ୍ରେସ କମିଟି ପକ୍ଷରୁ ନୂଆପୁଟ ଠାରେ ଏକ 'କଂଗ୍ରେସ କର୍ମୀ ତାଲିମ ଶିବର' ଅନୁଷ୍ଠିତ ହୋଇଥିଲା। ଏହି ଶିବରକୁ ଗୋପବନ୍ଧୁ ଚୌଧୁରୀ ଉଦ୍‌ଘାଟନ କରିଥିଲେ। ଶିବର ପରିଚାଳନାର ସମସ୍ତ ଦାୟିତ୍ୱ ରାଧାକୃଷ୍ଣ ବିଶ୍ୱାସରାୟଙ୍କ ଉପରେ ନ୍ୟସ୍ତ ହୋଇଥିଲେ ମଧ୍ୟ ଶିବରାର୍ଥୀଙ୍କ ମଧ୍ୟରେ କଂଗ୍ରେସ ଭାବନା ଓ ସେବା ଭାବ ଜାଗ୍ରତ କରାଇବା ପାଇଁ ଅଗ୍ରଣୀ ହରିହର ଦାସ ଗୋକୁଳାନନ୍ଦ ମହାନ୍ତି ଓ ଗୋପବନ୍ଧୁ ଚୌଧୁରୀ ଶିବରରେ ରହି ତାଲିମ ଦେଇଥିଲେ। ଏହି ଶିବର ଅନୁଷ୍ଠିତ ହେବା ପରେ ଗୋପବନ୍ଧୁ ଚୌଧୁରୀଙ୍କ କୋରାପୁଟ ଜିଲ୍ଲା ସହ ବିଶେଷ ସମ୍ପର୍କ ସ୍ଥାପନ ହୋଇ କ୍ରମେ ବୃଦ୍ଧି ପାଇବାକୁ ଲାଗିଥିଲା। ଜିଲ୍ଲାରେ କଂଗ୍ରେସର ସଂଗଠନ କାର୍ଯ୍ୟ କରିବା ପାଇଁ ପାର୍ବତ୍ୟ ଅଞ୍ଚଳର ବିଭିନ୍ନ ସ୍ଥାନରୁ ପ୍ରଥମ ଦଫାରେ ବଳୁ ହୋଇ ୩୪୦ ଜଣ ଏହି ଶିବରରେ ତାଲିମ ନେଇଥିଲେ। ଯେଉଁମାନେ ଜମିଦାର ଓ ବ୍ରିଟିଶ ସରକାରର ବେଠିଆ କରି ଅଶନଶ୍ୱାସୀ ହୋଇ ପଡ଼ିଥିଲେ ସେମାନଙ୍କ ସମସ୍ତ ଅନ୍ୟାୟ ଅତ୍ୟାଚାରର ପ୍ରତିରୋଧ କରିବା ପାଇଁ ଏହି ତାଲିମ କେନ୍ଦ୍ର ଶିକ୍ଷା ଓ ସାହାସ ଯୋଗାଇଥିଲା। ଗାନ୍ଧୀ ଗୁମୁସ୍ତାମାନଙ୍କ କାର୍ଯ୍ୟ ଅତ୍ୟାଚାରୀଙ୍କ ଆଖି

ଖୋଲି ଦେଇଥିଲା । ସେମାନଙ୍କ ବିଭିନ୍ନ ଗାଁଗଣ୍ଡା ହାଟ ବଜାରରେ ଗାନ୍ଧୀ ଗୁମୁଘାର ସମ୍ପୂର୍ଣ୍ଣ ହେବାକୁ ପଡ଼ୁଥିଲା । କଂଗ୍ରେସ କର୍ମୀର ଜନକ ପ୍ରଶଂସନ ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ବ୍ୟସ୍ତିତ ହୋଇଥିଲା । କୋରାପୁଟ ଜିଲ୍ଲାରେ କଂଗ୍ରେସର ୧୪ ଦଫା ସାଙ୍ଗଠନିକ କାର୍ଯ୍ୟକ୍ରମ ପ୍ରସାରିତ ହେବାକୁ ଲାଗିଲା ।

୧୫-୧୦-୧୯୩୯ ସୁଦ୍ଧା କୋରାପୁଟ ଜିଲ୍ଲା କଂଗ୍ରେସର ସଭ୍ୟ ସଂଖ୍ୟା—

| | | | |
|---|---|---|---|
| ୧) | ନବରଙ୍ଗପୁର | — | ୩୮୯୧ |
| ୨) | ଉମରକୋଟ | — | ୬୨୯୪ |
| ୩) | କୋଟପାଡ଼ | — | ୫୮୦୩ |
| ୪) | ଜୟପୁର | — | ୮୬୪ |
| ୫) | ରାୟଗଡ଼ | — | ୨୫୭ |
| ୬) | ପାଡୁଆ | — | ୧୬୫୪ |
| ୭) | ମାଲକାନଗିରି | — | ୨୧୭୮ |
| ୮) | କୋରାପୁଟ | — | ୨୭୧୧ |
| ୯) | ଦଶମନ୍ତପୁର / ପଟାଙ୍ଗୀ | — | ୨୯୩୫ |
| ୧୦) | ଗୁଣୁପୁର | — | ୩୦୪ |
| | ମୋଟ | — | ୨୬,୯୦୦ |

୧୫ ୨-୧୯୪୦ ରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ସମ୍ପାଦକ ନିର୍ବାଚନ ଅନୁଷ୍ଠିତ ହୋଇଥିଲା । ଏହି ପଦବୀ ପାଇଁ କୋରାପୁଟ ଜିଲ୍ଲା କଂଗ୍ରେସର ସଭାପତି ରାଧାକୃଷ୍ଣ ବିଶ୍ୱାସରାୟ ମଧ ପ୍ରାର୍ଥୀ ହୋଇଥିଲେ । ବିଶ୍ୱାସରାୟ ଓ ଗୋଦାବରୀଶ ମିଶ୍ରଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ହୋଇଥିଲା । ବିଶ୍ୱାସରାୟ ୭୪ଟି ଭୋଟ ଓ ମିଶ୍ର ୫୫ଟି ଭୋଟ ପାଇଥିଲେ । ରାଧାକୃଷ୍ଣ ବିଶ୍ୱାସରାୟ ପ୍ରଦେଶ କଂଗ୍ରେସ କମିଟିର ସଭାପତି ନିର୍ବାଚିତ ହେଲେ । ଜଣେ କୋରାପୁଟିଆ ସେହି ସମୟରେ ପ୍ରଦେଶ କଂଗ୍ରେସ କମିଟିର ସଭାପତି ହେବା କମ ଗୌରବର ବିଷୟ ନୁହେଁ । ଆଜି ପର୍ଯ୍ୟନ୍ତ କୋରାପୁଟ ଜିଲ୍ଲାର କୌଣସି କଂଗ୍ରେସ ବ୍ୟକ୍ତି ଏହି ପଦବୀ ପାଇପାରି ନାହାନ୍ତି । ଉତ୍କଳ ପ୍ରଦେଶ କଂଗ୍ରେସ କମିଟିରେ କୋରାପୁଟ ଜିଲ୍ଲାର ୨୦ ଜଣ ସଭ୍ୟ ରହିଥିଲେ । ନିଖିଳ ଭାରତ କଂଗ୍ରେସ କମିଟିର ସଭ୍ୟ ଭାବେ ରାଧାକୃଷ୍ଣ ବିଶ୍ୱାସରାୟ ଓ ସଦାଶିବ ତ୍ରିପାଠୀ ନିର୍ବାଚିତ ହୋଇଥିଲେ ।



୧୯୩୭ ସାଲର କଥା । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ପ୍ରଥମ ବର୍ଷ । ଓଡ଼ିଶାର ପ୍ରଥମ ଗଭର୍ଣ୍ଣର ସାର ଜନ ଅଷ୍ଟିନ ହବାକ । କୋରାପୁଟ ଜିଲ୍ଲା ତାଙ୍କ ନିକଟରେ ହସ୍ତ ମୁଦ୍ର ମହାଲ । କୋରାପୁଟ ଜିଲ୍ଲାରେ ତାଙ୍କର ବିଶେଷ କ୍ଷମତା ପ୍ରୟୋଗ କରିବାର ଅଧିକାର ଥିଲା । ଗଭର୍ଣ୍ଣର ହବାକଙ୍କ କୋରାପୁଟ ଜିଲ୍ଲା ପାଇଁ ଗସ୍ତ କାର୍ଯ୍ୟକ୍ରମ ସ୍ଥିର ହୋଇଥାଏ । ହବାକ ସାହେବ ସେତେବେଳେ ଇଂଲଣ୍ଡ ସମ୍ରାଟଙ୍କ ଏକ ପ୍ରଦେଶର ପ୍ରତିନିଧି ଭାବେ ଆଦିବାସୀ ମାଟିରେ ପଦାର୍ପଣ କରିଥିଲେ । ତାଙ୍କୁ କିଭଳି ସମ୍ବର୍ଦ୍ଧନା ଦିଆଯାଇଥିବ ସ୍ୱଭାବତଃ କଥା ।

ହବାକ ସାହେବଙ୍କ ଗସ୍ତ ଖବର ପାଇଥିବା ସଙ୍ଗେ ସଙ୍ଗେ ଜୟପୁର ଜମିଦାର ଓ ବ୍ରିଟିଶ ଅଫିସରଙ୍କ ଦ୍ୱାରା ସାହେବଙ୍କ ରହିବା, ଖାଇବା, ମଉଜ ମଜଲିସ କରିବାର ବିରାଟ ଆୟୋଜନ କରାଯାଇଥିଲା । ହବାକ ସାହେବଙ୍କ ପାଇଁ ଷ୍ଟକ୍ଦାର ମାନଙ୍କର ଗୁଆ ଘିଅ ସଂଗ୍ରହ ହେଉଥିବାବେଳେ କୋରାପୁଟିଆର ମରଣ ସମୟ ଆସି ଯାଇ ଆଖିରୁ ତରଳ ଲୁହ—ଲହୁଣୀ ବୋହିବାକୁ ଲାଗିଥିଲା । ଲୋକମାନଙ୍କ ଠାରୁ ଚାଉଳ, ଡାଲି, ଅଣ୍ଡା, ପ୍ରଭୃତି ଆବଶ୍ୟକୀୟ ଖାଦ୍ୟ ପଦାର୍ଥ ଜବରଦସ୍ତ ଆଦାୟ କରାଗଲା । କାବୁଲିବାଲାଙ୍କ ଋଣ ଅଦୂଲି ଭଳି ଲୋକଙ୍କଠାରୁ ଟଙ୍କା ମଧ୍ୟ ଆଦାୟ ଦେଲା । ଗଭର୍ଣ୍ଣରଙ୍କ ଶୀକାର ଦଳ ପାଇଁ ବହୁ ସଂଖ୍ୟାରେ ଲୋକଙ୍କ ଶାଳରେ ବନ୍ଧା ହୋଇଥିବା ଗାଈ ଗୋରୁ ଛେଳି ମେଣ୍ଢା ଟାଣି ଅଣାଯାଇ ଠୁଳ କରାଗଲା । ଲୋକଙ୍କୁ ଏଥିପାଇଁ ପ୍ରାପ୍ୟ ଦିଆଗଲା ନାହିଁ । ବିନା ପାରିଶ୍ରମିକରେ ଗଭର୍ଣ୍ଣର ଓ ତାଙ୍କ ଦଳ ପାଇଁ କୋରାପୁଟିଆଙ୍କୁ ବେଠିଆ ଖଟିବାକୁ ନିର୍ଦ୍ଦେଶ ଦିଆଯାଇଥିଲା ।

କଂଗ୍ରେସ ଏହି ଘୋର ଅନ୍ୟାୟର ପ୍ରତିବାଦ କରିଥିଲା । ରାଧାକୃଷ୍ଣ ବିଶ୍ୱାସରାୟଙ୍କ ଆହ୍ୱାନ କ୍ରମେ ହବାକ ସାହେବଙ୍କ ଗସ୍ତକୁ ନେଇ କୋରାପୁଟିଆ ଉପରେ ଯେଉଁ ଅନ୍ୟାୟ କରାଯାଇଅଛି ତାହାର ପ୍ରତିକାର କରିବା ପାଇଁ କଂଗ୍ରେସ ଠିଆ ହୋଇପଡ଼ିଥିଲା । ବିଭିନ୍ନ ସ୍ଥାନରେ କଂଗ୍ରେସ ପକ୍ଷରୁ ସଭା ସମିତି କରାଗଲା ।

ଲୋକ ମାରଣ ମାଡ଼ର ଖବର ନିନ୍ଦା କରାଯାଇ ତାହା ବିରୁଦ୍ଧରେ ଜନମତ ସୃଷ୍ଟି କରାଯାଇ ଥିଲା । ଲୋକଙ୍କ ଠାରୁ ଜବରଦସ୍ତି ଲୁଟି ନିଆଯାଇଥିବା ଜିନିଷପତ୍ର, ଗୋରୁ ଗାଈର ମୂଲ୍ୟ ଫେରାଇବାକୁ କଂଗ୍ରେସ ଚିତ୍କାର କରି ତାର ଦାବୀ ଉପସ୍ଥାପିତ କଲା ।

ଲୋକଙ୍କ ଦୁଃଖରେ ଦୁଃଖୀ ହୋଇଥିବାରୁ କଂଗ୍ରେସିଅର କାମ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ହାବାକ ସାହେବଙ୍କ ଚତୁର ଘଟଣାବଳୀ ଲୋକମାନଙ୍କୁ କଂଗ୍ରେସ ପକ୍ଷରେ ଟାଣି ନେବାରେ ବେଶ ସହାୟକ ହୋଇଥିଲା । ଲୋକଙ୍କ ମନରେ କଂଗ୍ରେସ କର୍ମୀ ଓ ନେତାଙ୍କ ପ୍ରତି ବିଶ୍ୱାସ ଜନ୍ମିଲା । ବ୍ରିଟିଶ ସରକାର ଓ ଜମିଦାରଙ୍କଠାରୁ ଲୋକଙ୍କ ପ୍ରାପ୍ୟ ଛଡ଼ାଇ ଆଣିବାକୁ କଂଗ୍ରେସ ତା ଦାବୀରେ ଅଟଳ ରହିଲା । ଶେଷରେ ଲୋକଙ୍କଠାରୁ ଜୋର୍ ନେଇଥିବା ଜିନିଷ ପତ୍ରର ଦାମ ଫେରାଇବାରେ କଂଗ୍ରେସ ସମର୍ଥ ହୋଇଥିଲା । ଲୋକଙ୍କୁ ପ୍ରାପ୍ୟ ଟଙ୍କା ମିଳିଥିଲା । ଦୈନିକ 'ସମାଜ'ରେ ଏ ସମ୍ପର୍କରେ ସମ୍ବାଦ ପ୍ରକାଶିତ ହୋଇଥିବାରୁ ସମ୍ପାଦକ ଲିଙ୍ଗରାଜ ମିଶ୍ର ଓ ସମ୍ବାଦ ପ୍ରେରକ ରାଧାକୃଷ୍ଣ ବିଶ୍ୱାସରାୟଙ୍କ ଉପରେ କୋର୍ଟରେ ମକଦ୍ଦମା ଦାୟର କରାଗଲା । କିନ୍ତୁ କଂଗ୍ରେସିଆର ମୁଣ୍ଡ ତଳକୁ ନୋଇଁ ନଥିଲା । ଶେଷରେ ଜୟପୁର ଜମିଦାରୀ ତଥା ବ୍ରିଟିଶ ସରକାରୀ ଅଫିସରଙ୍କୁ ବାଧ୍ୟ ହୋଇ ମକଦ୍ଦମା ପ୍ରତ୍ୟାହାର କରିବାକୁ ପଡ଼ିଥିଲା ।

ଏ ଘଟଣାଟି ପରେ କୋରାପୁଟ କଂଗ୍ରେସର କାର୍ଯ୍ୟ ଲୋକଙ୍କ ହୃଦୟକୁ ଅଧିକ ସ୍ପର୍ଶ କରିଥିଲା । ପୁଣି କଂଗ୍ରେସିଆଙ୍କ ସଂଖ୍ୟା କ୍ଷିପ୍ରଗତିରେ ବଢ଼ିବାରେ ଲାଗିଲା । ଯାହା ଫଳରେ ଅନ୍ୟାୟ ଅତ୍ୟାଚାରର ବିରୋଧ କରିବାକୁ କଂଗ୍ରେସ ବିପୁଳ ଜନ ସମର୍ଥନ ହାସଲ କରିପାରିଥିଲା । ଗାନ୍ଧୀ ମହାତ୍ମାର ଡ଼ାକ କୋରାପୁଟ ଜିଲ୍ଲାର ସୁଦୂର ପାହାଡ଼ ପର୍ବତ ଘଞ୍ଚ ଜଙ୍ଗଲରୁ ସ୍ୱର ମିଳାଇ ପ୍ରତିଧ୍ୱନିତ ହେଉଥିଲା । ଏପରି ସମୟରେ କଂଗ୍ରେସ ପ୍ରାଦେଶିକ ନିର୍ବାଚନରେ ଭାଗନେଲା ।



୧୯୩୭ ମସିହାରେ ଅନୁଷ୍ଠିତ ପ୍ରାଦେଶିକ ସାଧାରଣ ନିର୍ବାଚନ କୋରାପୁଟ ଜିଲ୍ଲାରେ ଏକ ନୂତନ ଉଦ୍ଦୀପନା ସୃଷ୍ଟି କରିଥିଲା । କଂଗ୍ରେସିଆ ଓ ସାହେବ ସରକାରର ପଦଲେହନକାରୀଙ୍କ ମଧ୍ୟରେ ଯେଉଁ ନୀରବ ଲଢ଼ୁଆ ସଂଗ୍ରାମ ଚାଲୁ ରହିଥିଲା, ନିର୍ବାଚନ ବେଳେ ତାହା ପୂର୍ଣ୍ଣରୂପେ ପ୍ରକାଶିତ ହୋଇଥିଲା । ପ୍ରତ୍ୟେକ କ୍ଷେତ୍ରରେ ସ୍ୱାମୀମାନଙ୍କ ପ୍ରଭାବ ଓ ଆଧିପତ୍ୟ ଅନୁଭୂତ ହେଉଥିଲା । କିନ୍ତୁ ସେହି ସମୟକୁ କଂଗ୍ରେସିଆଙ୍କ ଦ୍ୱାରା କିଛିଟା ପରିବର୍ତ୍ତନ ହେବ ବୋଲି ଲୋକଙ୍କ ମନରେ ତ ପୂର୍ଣ୍ଣ ବିଶ୍ୱାସ ଆସିଯାଇଥିଲା । କଂଗ୍ରେସ ଓ ତାର ତିରଙ୍ଗା ପତାକା ସମସ୍ତ ଗ୍ରାମରେ ପ୍ରବେଶ କରିଥିଲା । କଂଗ୍ରେସର ଆହ୍ୱାନ କ୍ରମେ ହଜାର ହଜାର ସଂଖ୍ୟାରେ ଲୋକେ ଗାନ୍ଧୀ ଗୁମୁସ୍ତା ବାନ୍ଧିଯାଇ କଂଗ୍ରେସ ପ୍ରଚାରରେ ମାତିଯାଇଥିଲେ ।

ଓଡ଼ିଶା ବିଧାନ ସଭାର ମୋଟ ୬୦ଟି ଆସନ ମଧ୍ୟରୁ କୋରାପୁଟ ଜିଲ୍ଲାର ଆସନ ସଂଖ୍ୟା ଥିଲା ତିନି,--ନବରଙ୍ଗପୁର, ଜୟପୁର ଓ କୋରାପୁଟ । କଂଗ୍ରେସ ପକ୍ଷରୁ କୋରାପୁଟ ନିର୍ବାଚନ ମଣ୍ଡଳୀ ପାଇଁ ରାଧାକୃଷ୍ଣ ବିଶ୍ୱାସରାୟ, ଜୟପୁର ନିର୍ବାଚନ ମଣ୍ଡଳୀ ପାଇଁ ରାଧାମୋହନ ସାହୁ ଓ ନବରଙ୍ଗପୁର ନିର୍ବାଚନ ମଣ୍ଡଳୀ ପାଇଁ ସଦାଶିବ ତ୍ରିପାଠୀ ପ୍ରାର୍ଥୀ ହୋଇଥିଲେ । କଂଗ୍ରେସ ପ୍ରାର୍ଥୀଙ୍କ ବିରୁଦ୍ଧରେ ଜମିଦାରଙ୍କ ସମର୍ଥକ ଭାବେ ପଣ୍ଡିତ ବିଦ୍ୟାଧର ସିଂହଦେଓ କୋରାପୁଟରେ, ବାଲକୃଷ୍ଣ ଦାସ ଜୟପୁରରେ ଓ ହରିହର ମିଶ୍ର ନବରଙ୍ଗପୁରରେ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ ।

କୋରାପୁଟ ଜିଲ୍ଲାର ୩ଟି ନିର୍ବାଚନ ମଣ୍ଡଳୀରେ ବିଜୟ ପାଇଁ କଂଗ୍ରେସ ପକ୍ଷରୁ ଜୋରସୋରରେ ନିର୍ବାଚନ ପ୍ରଚାର କରାଯାଇଥିଲା । ଏକପଟେ କୋରାପୁଟିଆ ଗାନ୍ଧୀ ଗୁମୁସ୍ତା ଅନ୍ୟପଟେ ଜୟପୁର ଜମିଦାରଙ୍କ ସମସ୍ତ କର୍ମଚାରୀ ନିର୍ବାଚନ ପ୍ରାଙ୍ଗଣରେ ଓହ୍ଲାଇ ପଡ଼ିଥିଲେ । ନିର୍ବାଚନୀ ଯୁଦ୍ଧ ବେଶ ସରଗରମ ହୋଇଥିଲା । ଜମିଦାର-ସମର୍ଥକ ଗୋଷ୍ଠୀର ଲାଲ ପେଡ଼ି ଏବଂ କଂଗ୍ରେସର ହଳଦିଆ ପେଡ଼ି ।

କଂଗ୍ରେସ ପକ୍ଷରୁ ସେତେବେଳେ ଅନ୍ୟାୟ, ଅତ୍ୟାଚାର ବେଠି, ଚେଡ଼ମ ସପ୍ଲାଇ ଦ୍ରବ୍ୟାଦିକୁ ନିର୍ବାଚନ ପୂର୍ବରୁ ଉଚ୍ଛେଦ ବ୍ୟବହାର କରି ଭୋଟ ପ୍ରଚାର କରାଯାଇଥିଲା । ଯେଉଁ ସମସ୍ୟାର କଥା କଂଗ୍ରେସିଆ ପାଟିରୁ ଶୁଣା ଯାଉଥିଲା ସେସବୁ ଲୋକେ ଅଙ୍ଗେ ଲିଭଉଥିଲେ । କଂଗ୍ରେସ ସରକାର ପ୍ରତିଷ୍ଠିତ ହେଲେ ଲୋକଙ୍କ ଅଭାବ, ଅସୁବିଧା ଦୂର ହୋଇ ଏବଂ ଅନ୍ୟାୟ ଅତ୍ୟାଚାର ବନ୍ଦ ହେବ ବୋଲି ପ୍ରତିଶ୍ରୁତି ଦିଆଯାଇଥିଲା । ପ୍ରଦେଶ କଂଗ୍ରେସ କମିଟି ପକ୍ଷରୁ "କଂଗ୍ରେସ ପ୍ରକୃତ ବନ୍ଧୁ—କଂଗ୍ରେସକୁ ଭୋଟ ଦିଅନ୍ତୁ" ଶିରୋନାମାର ଯେଉଁ ପ୍ରଚାର ପତ୍ର ମୁଦ୍ରିତ ହୋଇ ଆସିଥିଲା ତାହାକୁ ଗାନ୍ଧୀ ଗୁମସ୍ତାମାନେ ଜିଲ୍ଲାର ଗଳିକନ୍ଦିରେ ବଣ୍ଟନ କରିଥିଲେ । ଲୋକେ ବନ୍ଧୁ ଆତ୍ମୀୟ ସମ୍ପର୍କରେ କଂଗ୍ରେସର ପ୍ରଚାର ପତ୍ର ନିଜେ ପଢ଼ି ଅନ୍ୟଙ୍କୁ ପଢ଼ାଇଥିଲେ ।

ପ୍ରଦେଶ କଂଗ୍ରେସ କମିଟିର ଅଧ୍ୟକ୍ଷ ନୀଳକଣ୍ଠ ଦାସ, ଦିବାକର ପଟ୍ଟନାୟକଙ୍କୁ ସାଙ୍ଗରେ ଧରି କୋରାପୁଟ ଜିଲ୍ଲାରେ ନିର୍ବାଚନ ସଫର କରିଥିଲେ । ସେ ଜୟପୁର, କୋଟପାଡ଼, କୋରାପୁଟ, ନବରଙ୍ଗପୁର ପ୍ରଭୃତି ସ୍ଥାନରେ ପ୍ରଥମଥର ପାଇଁ ତାଙ୍କର ଭାଷଣ ଦେଇଥିଲେ । ନବରଙ୍ଗପୁର 'ରାମ ନବମୀ ମନ୍ଦିର'ର ଯାହାକି କଂଗ୍ରେସ ଅଫିସ ତାହାର ସାମନାରେ ଅନୁଷ୍ଠିତ କଂଗ୍ରେସର ପ୍ରଥମ ସଭାରେ ନୀଳକଣ୍ଠ ଦାସ ଉଦ୍‌ବୋଧନ ଦେଇଥିଲେ ।

ଜୟପୁର ଜମିଦାରଙ୍କ ଦେବାନ ସି ଭି ରାଓ ଗାଁଗଣ୍ଡାର ନାୟକ ଗାଉଁଟିଆଙ୍କୁ କଂଗ୍ରେସ ବିରୋଧରେ କାର୍ଯ୍ୟ କରିବାକୁ ଆଦେଶ ଦେଇଥିଲେ । କଂଗ୍ରେସର ହଳଦିଆ ପେଡ଼ିରେ ଭୋଟ ଦେଲେ ଚାଷତର ଭୂମି ଛଡ଼ାଇ ନିଆଯିବ, ବଣରୁ କାଠ ଦିଆଯିବ ନାହିଁ ବୋଲି ଗୁମସ୍ତମାନଙ୍କ ଦ୍ୱାରା ଧମକ ଓ ପ୍ରଚାର କରାଯାଇଥିଲା । ବିଭିନ୍ନ ଉପାୟରେ କଂଗ୍ରେସ ସମର୍ଥକମାନଙ୍କୁ ଭୟ ପ୍ରଦର୍ଶନ କରାଯାଇଥିଲା । କିନ୍ତୁ ସେ ସବୁ କିଛି କାର୍ଯ୍ୟକୁ ଆସି ନଥିଲା । ହଜାର ହଜାର ସଂଖ୍ୟାରେ ଲୋକେ ଭୋଟ କେନ୍ଦ୍ରକୁ ଆସି କଂଗ୍ରେସ ସପକ୍ଷରେ ମତଦାନ କରିଥିଲେ ସମସ୍ତ ସ୍ଥାନରେ କଂଗ୍ରେସର ଅପୂର୍ବ ବିଜୟ ଘଟିଥିଲା । ଏହା ଜମିଦାର ଓ ତାଙ୍କ ଚାଟୁକାର ଦଳକୁ ବିସ୍ମିତ କରିଦେଲା । ସେତେବେଳେ ଦୁଇଟଙ୍କାରୁ ଅଧିକ ସିସ୍ତ ଦେବା ଲୋକଙ୍କୁ ଭୋଟ ଦାନର ଅଧିକାର ରହିଥିଲା ।

ନିର୍ବାଚନ ଫଳାଫଳ ପ୍ରକାଶିତ ହେବା ପରେ କୋରାପୁଟର ପ୍ରଥମ ଜିଲ୍ଲାପାଳ ଆର୍. ସି. ଏସ୍. ବେଲ୍ ବିଶ୍ୱାସରାୟଙ୍କ ବିଜୟ ଓ ଜମିଦାର କୁଆଁର ସିଂହ ଦେଓଙ୍କ ପରାଜୟ ଉପରେ ମନ୍ତବ୍ୟ ଦେବାକୁ ଯାଇ କହିଥିଲେ (ଜଣେ ହୋଟେଲବାଲା

ଜଣେ ଜମିଦାରଙ୍କୁ ପରାସ୍ତ କଲା ପୂର୍ବରୁ ବିଶ୍ୱାସରାୟ ଜୟପୁର ଠାରେ ଏକ ହୋଟେଲ କରି ତାରି ଜରିଆରେ କଂଗ୍ରେସ ପ୍ରଚାର କରୁଥିଲେ ।

ନିର୍ବାଚନ ପରେ ଜମିଦାର କର୍ମଚାରୀଙ୍କ ଦ୍ୱାରା ପ୍ରତିଶୋଧ ମୂଳକ କାର୍ଯ୍ୟ ଆରମ୍ଭ ହୋଇଥିଲା । ଲୋକଙ୍କୁ ଅଧିକ ହଇରାଣ ହରକତ କରିବାକୁ ବିଭିନ୍ନ ପ୍ରକାର ଫନ୍ଦି ଚଳାଯାଉଥିଲା । ଗାଁ ଗଣ୍ଡାର ରୟତମାନଙ୍କୁ କାଠ ଆଣିବାପାଇଁ ବଣକୁ ଗଲେ ରାଜ କର୍ମଚାରୀମାନେ ସେମାନଙ୍କୁ ସମାଲୋଚନା କରି ହଳଦିଆ ପେଣ୍ଡିକୁ ଯାଅ ବୋଲି କହିବାକୁ ଲାଗିଲେ । ଲୋକଙ୍କୁ ବିଭିନ୍ନ କ୍ଷେତ୍ରରେ ଧମକ ଚମକ ଦିଆଯାଉଥିଲା । ତେବେ କଂଗ୍ରେସର ନିର୍ବାଚନୀ ବିଜୟ କଂଗ୍ରେସକୁ ଦେଶ ଶକ୍ତି ଓ ସାମର୍ଥ୍ୟ ଯୋଗାଇଥିଲା । କଂଗ୍ରେସ ଲୋକର ହୋଇ ଲୋକଙ୍କ ଉପରେ ହେଉଥିବା ଅନ୍ୟାୟ ଅତ୍ୟାଚାର ପ୍ରତିରୋଧ ଓ ପ୍ରତିକାର କରିବା ପାଇଁ ଯେଉଁ କାର୍ଯ୍ୟକ୍ରମ ଗ୍ରହଣ କରିଥିଲା ତାହା ଅବିରାମ ଭାବରେ ଚାଲିଥିଲା ।



୨୩

୧୪-୫ ୧୯୩୯ ରେ ସୁରୁଡାଠାରେ ପ୍ରଦେଶ କଂଗ୍ରେସ କମିଟିର ବୈଠକ ସଭାପତି ନୀଳକଣ୍ଠ ଦାଶଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଥିଲା । ଏଥିରେ କୋରାପୁଟ ଜିଲ୍ଲାରେ ଚାଲିଥିବା ଅନ୍ୟାୟ ଅତ୍ୟାଚାର ପ୍ରଭୃତି ସମସ୍ୟାର ବିସ୍ତୃତ ଆଲୋଚନା କରାଯାଇଥିଲା । କୋରାପୁଟ ଜିଲ୍ଲା କଂଗ୍ରେସ ପକ୍ଷରୁ ଆଗତ ବିଭିନ୍ନ ବିଷୟ ବୈଠକରେ ଉପସ୍ଥାପନ କରାଯାଇ ତାହାର ପ୍ରତିକାର ପାଇଁ ପ୍ରସ୍ତାବ ଗୃହୀତ ହୋଇଥିଲା ।

ପ୍ରସ୍ତାବ ନମ୍ବର ଦୁଇରେ କୁହାଯାଇଥିଲା —

"କୋରାପୁଟ ଜିଲ୍ଲାର ପୋଲିସ ଓ ଜଙ୍ଗଲ ବିଭାଗ କର୍ମଚାରୀଙ୍କ ଜୁଲମ ବିଷୟ କୋରାପୁଟ ଜିଲ୍ଲା କଂଗ୍ରେସ କମିଟିର ସମ୍ପାଦକ ଶ୍ରୀଯୁକ୍ତ ରାଧାମୋହନ ସାହୁଙ୍କ ୧୦-୫-୩୯ ର ଟେଲିଗ୍ରାମ ଓ ରାୟଗଡ଼ରୁ ଜଣେ ବିଶିଷ୍ଟ ଲୋକ ୧୦-୫-୩୯ ରେ ପ୍ରାଦେଶିକ ସଭାପତିଙ୍କୁ ଦେଇଥିବା ଚିଠି ଏବଂ ଶ୍ରୀ ରାଧାମୋହନ ସାହୁ ଓ ଶ୍ରୀ ସଦାଶିବ ତ୍ରିପାଠୀଙ୍କୁ ପ୍ରାଦେଶିକ କାର୍ଯ୍ୟକାରୀ କମିଟିକୁ ଡକାଇ ତାଙ୍କଠାରୁ କୋରାପୁଟ ଜିଲ୍ଲା ନେଇ ସବିଶେଷ ଶୁଣିବାରେ ଦେଖାଗଲା ଯେ, ଏହି ଦୁଇଟି ବିଷୟ ବ୍ୟତୀତ ଅନ୍ୟ ଅନେକ ବିଷୟରେ ମଧ୍ୟ କୋରାପୁଟ ଜିଲ୍ଲା ଲୋକଙ୍କ ଅନେକ ଅସୁବିଧା ଅଛି । ଏ ସମସ୍ତ ଦୃଷ୍ଟେ କମିଟି ସ୍ଥିରକଲେ ଯେ, କୋରାପୁଟ ଜିଲ୍ଲାରେ ପୁଲିସ ଓ ଅନ୍ୟ ସରକାରୀ କର୍ମଚାରୀ ବାସ୍ତବିକ ବଡ଼ ଆତଙ୍କ ସୃଷ୍ଟି କରୁଛନ୍ତି । ଏହାଦ୍ୱାରା କୋରାପୁଟ ଜିଲ୍ଲା ଲୋକମାନେ ବଡ ଭୀତତ୍ରସ୍ତ ହେଉଛନ୍ତି । ଓଡ଼ିଶା କଂଗ୍ରେସ ସରକାର ପ୍ରତି ଘୋର ଅନାସ୍ଥା ଜାତ ହେଉଛି । ପ୍ରାଦେଶିକ ସରକାର ଏ ବିଷୟ ପ୍ରତି ତୁରନ୍ତ ଦୃଷ୍ଟି ଦେବାକୁ କମିଟି ପରାମର୍ଶ ଦେଉଛନ୍ତି ।"

ପ୍ରଦେଶ କଂଗ୍ରେସ କମିଟିର ପ୍ରସ୍ତାବ କ୍ରମେ ସଭାପତି ଶ୍ରୀ ନୀଳକଣ୍ଠ ଦାଶଙ୍କୁ କୋରାପୁଟ ଗସ୍ତ କରି ଏକ ରିପୋର୍ଟ ଦେବାକୁ କୁହାଯାଇଥିଲା । ଶ୍ରୀ ନୀଳକଣ୍ଠ ଦାଶ ୨୭-୫-୩୯ ରେ କୋରାପୁଟ ଜିଲ୍ଲା ଗସ୍ତରେ ଆସିଥିଲେ । ସେ ଏକ ସପ୍ତାହ ରହି ଗ୍ରାମ

ଓ ଜଙ୍ଗଲ ଅଞ୍ଚଳ ଗସ୍ତ କରି ଲୋକଙ୍କ ସମସ୍ୟା ଅନୁଧ୍ୟାନ କରିବା ସଙ୍ଗେ ସଙ୍ଗେ ୧୫ଟି ସଭାରେ ଭାଷଣ ଦେଇଥିଲେ । ସ୍ଥାନୀୟ ପୋଲିସ ସହାୟ୍ୟରେ ଜମିଦାରୀ କର୍ମଚାରୀମାନେ କୋରାପୁଟ ଜିଲ୍ଲା ଲୋକଙ୍କ ଉପରେ କିଭଳି ଅତ୍ୟାଚାର କରୁଛନ୍ତି ତାହାର ବର୍ଣ୍ଣନା କରିବାକୁ ଯାଇ ତାଙ୍କ ରିପୋର୍ଟରେ ଲେଖିଥିଲେ—

"ମହାରାଜାଙ୍କ କର୍ମଚାରୀମାନେ ସବୁଠାରେ ଲୋକଙ୍କ ଉପରେ ଅତ୍ୟାଚାର, ଭୟ, ଧମକ ଚଳାଉଛନ୍ତି । ମିଥ୍ୟା ମକଦ୍ଦମାମାନ କରୁଛନ୍ତି । ଲୋକଙ୍କୁ କଂଗ୍ରେସ ମେମ୍ବର ନହେବା ପାଇଁ ଧମକାଉଛନ୍ତି । କେତେକ ଜାଗାରେ ପୋଲିସ କର୍ମଚାରୀମାନେ ସେମାନଙ୍କ ଏ କାର୍ଯ୍ୟରେ ସାହାଯ୍ୟ କରୁଛନ୍ତି ।

ମୁଁ ଯେତେଦୂର କହିପାରେ ଏ ସବୁର ପ୍ରଧାନ କାରଣ ହେଉଛି ଯେ ଏବେ ବେଠି ଓ ରସିଦ ପ୍ରଥା ହଟାଇ ଦିଆଯାଉ । ଲୋକେ କୌଣସି କାମ କଲେ, ଖାଦ୍ୟ ଜିନିଷ ବା ଅନ୍ୟ କୌଣସି ଜିନିଷ ଯୋଗାଇଲେ ସେଥିପାଇଁ ଯେ ପଇସା ଦାବୀ କରିବେ ସେ କଥା ଜଙ୍ଗଲ ବିଭାଗ, ରାଜସ୍ୱ ବିଭାଗ, ଇଷ୍ଟେଟ କର୍ମଚାରୀ ଏବଂ ପୋଲିସ କର୍ମଚାରୀ ଧାରଣା କରିପାରୁ ନ ଥିବାର ଜଣାଯାଇଅଛି । ଏ ଅଞ୍ଚଳର ଶତକଡ଼ା ୭୫ ଭାଗ ଗ୍ରାମରେ ମୁସ୍ତାଦାରୀ ପ୍ରଥା ପ୍ରଚଳିତ ଅଛି । ଏହା ଲୋକଙ୍କୁ ଶୋଷଣ କରିବାର କୌଣସି କଳ ସ୍ୱରୂପ । ରୟତମାନେ ଯାହା ଦିଅନ୍ତି ସେଥିପାଇଁ ତାଙ୍କୁ କେବେ-ରସିଦ ଦିଆଯାଏ ନାହିଁ । ସେମାନେ ରସିଦ ଗୁହିଁଲେ ମିଳିବା ତ ଦୂରର କଥା ସମସ୍ତ ସମୟରେ କଦର୍ଯ୍ୟ ବ୍ୟବହାର କରାଯାଇଥାଏ । ଅବଶିଷ୍ଟ ଗ୍ରାମମାନଙ୍କରେ ରସିଦ ଦେବାର ପ୍ରଥା ଅଛି । ତାହା ତେଲୁଗୁ କିମ୍ବା ଇଂରାଜୀରେ ଦିଆଯାଇଥାଏ । ଗରିବ ରୟତମାନେ ପଢ଼ିବାର ଉପାୟ ନାହିଁ । ଇଷ୍ଟେଟର ଅଧା ରାଜସ୍ୱ ଧାନ ଆକାରରେ ଆଦାୟ ହୁଏ । ଇଷ୍ଟେଟ ଖମାର ସାଧାରଣତଃ ୧୦ ମାଇଲ ଦୂରରେ ଅବସ୍ଥିତ । ସେଠାକୁ ରୟତ ଧାନ ବୋହି ନେଇଯିବାର ରେଗୁଲେସନରେ ବ୍ୟବସ୍ଥା ନାହିଁ । ସ୍ଥାନେ ସ୍ଥାନେ ୨୦/୨୫ ମାଇଲ ଦୂରରେ ଇଷ୍ଟେଟର ଖମାର ରହିଛି । ରୟତମାନଙ୍କୁ ବିପଦ ପୂର୍ଣ୍ଣ ଅସମତଳ ଅଞ୍ଚଳ ଭୂଇଁ ଉପରେ ଶଗଡ଼ ନେଇ ଯିବାକୁ ହୁଏ । କିନ୍ତୁ ଏ ଭଳି ଭାବରେ ଧାନ ବୋହି ନେବାକୁ ସେମାନଙ୍କୁ କିଛି ମିଳେନାହିଁ । ଆମ କଂଗ୍ରେସ କର୍ମୀମାନେ ବେଠି ପ୍ରଥା ଏବଂ ବିନା ରସିଦରେ ଧାନ ଆଦାୟ ଅସୁଲ ପ୍ରଥା ବନ୍ଦ କରିବା ପାଇଁ ଗୁହିଁଥିଲେ । କିନ୍ତୁ ଇଷ୍ଟେଟ କର୍ମଚାରୀମାନେ କଂଗ୍ରେସିଆମାନେ 'ଖଜଣା ବନ୍ଦ ଆନ୍ଦୋଳନ କରୁଛନ୍ତି' ବୋଲି ପ୍ରଚାର କରୁଛନ୍ତି ।

ଜଙ୍ଗଲ ବିଭାଗ କର୍ମଚାରୀ ଲୋକଙ୍କ ଉପରେ ବହୁତ ଅତ୍ୟାଚାର କରୁଛନ୍ତି ।"

ଏହି ଅବସରରେ ନୀଳକଣ୍ଠ ଦାସ ଜୟପୁର ଜମିଦାରଙ୍କ ସହ ଆଲୋଚନା ମଧ୍ୟ କରିଥିଲେ । ଆଲୋଚନାର ନିଷ୍ପତ୍ତି ବିଷୟ ସେ ପ୍ରଦେଶ କଂଗ୍ରେସ କମିଟିକୁ ଦେଇ

ତାଙ୍କ ରିପୋର୍ଟରେ ବର୍ଣ୍ଣାଇ ଥିଲେ ଯେ—

୧) ଯେଉଁଠାରେ ଅଧିକାଂଶ ରଯ୍ୟତ ଗୃହିଁବେ ସେଠାରେ ମୁସ୍ତାଦାର ପ୍ରଥା ଉଠାଇ ଦିଆଯିବ ।

୨) ପ୍ରତ୍ୟେକ ଆଦାୟ ଅସୁଲ ପାଇଁ ଓଡ଼ିଆ ରସିଦ ଦେବା ସଙ୍ଗେ ସଙ୍ଗେ କରାଯିବ । (ଖଡ଼କଡ଼ା ୮୫ ଭାଗ ରାଜସ୍ୱ କର୍ମଚାରୀ ତେଲୁଗୁ ଅଛନ୍ତି । ଓଡ଼ିଆ ଜାଣି ନାହାନ୍ତି ବୋଲି ଜମିଦାରଙ୍କ ପକ୍ଷରୁ ଲିଖିତ ଆପତ୍ତି ଉଠାଇଥିଲେ । କିନ୍ତୁ ମହାରାଜାଙ୍କ ପକ୍ଷରୁ ଧିର ଗୁରୁତ୍ୱ ବୁଝାଇ ଦିଆଯିବାପରେ ଛ'ମାସ ଭିତରେ ଓଡ଼ିଆ ଜାଣିଥିବା ଅଫିସର ନିଯୁକ୍ତ କରିବାକୁ ଓ ଓଡ଼ିଆରେ ରସିଦ ଦେବାକୁ ରାଜି ହୋଇଥିଲେ ।)

୩) ତିନି ମାଇଲରୁ ଅଧିକ ଦୂରକୁ ଧାନ ବୋହି ନେବାପାଇଁ ମଜୁରି ଦିଆଯିବ ।

୪) ଜଙ୍ଗଲ ସମ୍ପର୍କିତ ମକଦ୍ଦମା ବିଷୟରେ ଦରକାର ହେଲେ କଂଗ୍ରେସ କମିଟିମାନଙ୍କର ପରାମର୍ଶ ନିଆଯାଇପାରେ । କିନ୍ତୁ ମହାରାଜାଙ୍କ ଜାଣତରେ ନଥାଇ କୌଣସି ମକଦ୍ଦମା କୋର୍ଟକୁ ଯିବନାହିଁ । ଇଷ୍ଟେଟ କର୍ମଚାରୀମାନେ କଂଗ୍ରେସ କର୍ମୀଙ୍କୁ ସ୍ୱୀକାର କରିବେ ।

ଜମିଦାର ତାଙ୍କ ଦେବାନ ସହ ପରାମର୍ଶ କରି ଏ ସବୁ ସର୍ତ୍ତ ସ୍ୱାକ୍ଷର କରିବାରେ ରାଜି ହୋଇଛନ୍ତି । କିନ୍ତୁ ଏ ପର୍ଯ୍ୟନ୍ତ ଚୁକ୍ତିନାମା ସ୍ୱାକ୍ଷର ହୋଇନାହିଁ ।



## ୧୪

୧୯୩୯ ସେପ୍‌ଟେମ୍ବର ୩ ତାରିଖରେ ଦ୍ୱିତୀୟ ବିଶ୍ୱ ଯୁଦ୍ଧ ଆରମ୍ଭ ହୋଇ ଯାଇଥିଲା । ଏହା ଥିଲା କଂଗ୍ରେସର ଭାଗ୍ୟ ପରୀକ୍ଷା ଏବଂ ସନ୍ଧିସନ୍ଧିର ସମୟ । ରାଜକୀୟ ଘୋଷଣାନାମା ଦ୍ୱାରା ଇଂଲଣ୍ଡ ଭାରତକୁ ବିଶ୍ୱ ଯୁଦ୍ଧ ଭିତରକୁ ଠେଲିବାକୁ ଚାହିଁଥିଲା । ଅନ୍ୟ ପକ୍ଷରେ କଂଗ୍ରେସ ନିଜର ସ୍ୱାଧୀନ ଭାରତ ଦାବୀ ନେଇ ଅଟଳ ରହିଥିଲା । ତାର ଦାବୀ ପୂରଣ ବିନା କଂଗ୍ରେସ ଯୁଦ୍ଧରେ ଯୋଗ ଦେବାକୁ ପ୍ରତ୍ୟାଖ୍ୟାନ କରିଥିଲା । ବ୍ରିଟିଶ ସରକାର ଓ କଂଗ୍ରେସ ନେତାମାନଙ୍କ ମଧ୍ୟରେ ମତାନ୍ତର ଉପୁଜିଥିଲା ଏବଂ କଂଗ୍ରେସ ମନ୍ତ୍ରୀମାନେ ନିଜ ନିଜ ପଦବୀରୁ ଇସ୍ତଫା ଦେଇଥିଲେ । କଂଗ୍ରେସ ଯୁଦ୍ଧରେ ଇଂଲଣ୍ଡକୁ ସାହାଯ୍ୟ କରିବାକୁ ମନା କରିବା ସଙ୍ଗେ ସଙ୍ଗେ ବିରୋଧ କରିଥିଲା ।

ଯୁଦ୍ଧ ବିରୁଦ୍ଧରେ କଂଗ୍ରେସ ପକ୍ଷରୁ ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ କରିଯାଇ ଶାନ୍ତିପୂର୍ଣ୍ଣ ଭାବେ ପ୍ରତିବାଦ କରାଯାଇଥିଲା । ଏହି ସମୟରେ କୋରାପୁଟ ଜିଲ୍ଲା କଂଗ୍ରେସର ନେତୃତ୍ୱ ରାଧାକୃଷ୍ଣ ବିଶ୍ୱାସରାୟଙ୍କୁ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ସଭାପତି ପଦରେ ଅଧିଷ୍ଠିତ କରାଯାଇ ଗୁରୁ ଦାୟିତ୍ୱ ଅର୍ପଣ କରାଯାଇଥିଲା ।

କୋରାପୁଟ ଜିଲ୍ଲାରେ କଂଗ୍ରେସର ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ ହେବା ସଙ୍ଗେ ସଙ୍ଗେ ପ୍ରତିକ୍ରିୟାଶୀଳ ପଦଲେହନକାରୀଙ୍କ ମୁଣ୍ଡବ୍ୟଥା ଆରମ୍ଭ ହେବାକୁ ଲାଗିଥିଲା । ଏହାର ସୁଯୋଗ ନେଇ ସେମାନେ କଂଗ୍ରେସ ଲୋକଙ୍କ ଉପରେ ପୁଣି ଅନ୍ୟାୟ ଅତ୍ୟାଚାରର ଦମନଲୀଳା ଆରମ୍ଭ କରିଦେଇଥିଲେ । ଜୟପୁର ଜମିଦାର ଓ ଗୋରା ସରକାର ବିପକ୍ଷରେ କଂଗ୍ରେସର ସତ୍ୟାଗ୍ରହ ଆହ୍ୱାନ ଯୋଗୁଁ ବେଠି, ଗତିମ ପ୍ରଭୃତି ଅମାନୁଷିକ ପ୍ରଥା ପୁଣି ମୁଣ୍ଡ ଟେକିଥିଲା । କଂଗ୍ରେସ କର୍ମୀମାନେ ପଛଘୁଞ୍ଚା ନ ଦେଇ ଅନ୍ୟାୟ ଅତ୍ୟାଚାରର ବିରୋଧ କରିବା ସାଥେ ସାଥେ ମହାତ୍ମା ଗାନ୍ଧୀଙ୍କ ଅହିଂସାକୁ ଅକ୍ଷରେ ଅକ୍ଷରେ ପାଳନ କରି ଯୁଦ୍ଧ ବିରୁଦ୍ଧରେ ସତ୍ୟାଗ୍ରହ କରିଥିଲେ ।

କୋରାପୁଟ ଜିଲ୍ଲା କଂଗ୍ରେସ କମିଟି ପକ୍ଷରୁ ୫୦୦ ଜଣ ଆଗ୍ରହୀ ସତ୍ୟାଗ୍ରହୀଙ୍କ ନାମ-ତାଲିକା ମହାତ୍ମା ଗାନ୍ଧୀଙ୍କ ଅନୁମୋଦନ ପାଇଁ ପ୍ରେରିତ ହୋଇଥିଲା। ସତ୍ୟାଗ୍ରହୀ ହେବାପାଇଁ କେତେକ ନିୟମ ନିର୍ଦ୍ଧାରିତ ହୋଇଥିଲା। ସତ୍ୟାଗ୍ରହୀ ଖଦଡ଼ ପିନ୍ଧୁଥିବେ ଏବଂ କଂଗ୍ରେସର ସକ୍ରିୟ ସଭ୍ୟ ହୋଇଥିବେ ବୋଲି ବାଧ୍ୟ ରଖାଯାଇଥିଲା। କୋରାପୁଟ ଜିଲ୍ଲାର ୧୧୦ ଜଣଙ୍କୁ ପ୍ରଥମ ଦଫାରେ ବ୍ୟକ୍ତିଗତ ସତ୍ୟାଗ୍ରହ କରିବା ପାଇଁ ଅନୁମୋଦନ କରାଯାଇଥିଲା। ଏଥିରେ ୩ ଜଣ ବିଧାୟକ ସମେତ ମୁଖିଆ କଂଗ୍ରେସ ଲୋକେ ସତ୍ୟାଗ୍ରହୀ ମନୋନୀତ ହୋଇଥିଲେ। ଓଡ଼ିଶାର ସତ୍ୟାଗ୍ରହୀ ନାମ ତାଲିକା ମହାତ୍ମା ଗାନ୍ଧୀଙ୍କ ନିକଟରେ ଅନୁମୋଦନ କରି ଆଣିବାର ଦାୟିତ୍ୱ ପ୍ରାଣକୃଷ୍ଣ ପଟ୍ଟନାୟକ ଓ ମନମୋହନ ଚୌଧୁରୀଙ୍କ ଉପରେ ନ୍ୟସ୍ତ ହୋଇଥିଲା।

ଜିଲ୍ଲାର ୧୧୦ ଜଣ ସତ୍ୟାଗ୍ରହୀ କେଉଁ ସ୍ଥାନରେ କେଉଁ ତାରିଖରେ ସତ୍ୟାଗ୍ରହ କରିବେ ତାହା ପୂର୍ବରୁ ସ୍ଥିରୀକୃତ ହୋଇଥିଲା। ସେ ପ୍ରକାରେ ବିଭିନ୍ନ ସ୍ଥାନରେ କଂଗ୍ରେସ ସତ୍ୟାଗ୍ରହୀମାନେ ସତ୍ୟାଗ୍ରହ କରି ଗିରଫ ହୋଇଥିଲେ। ସତ୍ୟାଗ୍ରହୀମାନେ ଜିଲ୍ଲାପାଳଙ୍କୁ ପ୍ରଥମେ ସତ୍ୟାଗ୍ରହ ସମ୍ବନ୍ଧରେ ଜଣାଇବାକୁ ପଡ଼ୁଥିଲା। ସତ୍ୟାଗ୍ରହୀ ଯୁଦ୍ଧ ବିରୁଦ୍ଧରେ ଭାଷଣ ଦେଇ ଯୁଦ୍ଧକୁ ସାହାଯ୍ୟ ଦେବା ପାପ ବୋଲି ଧ୍ୱନି ଦେଉଥିଲେ। ଏହି ଧ୍ୱନି ଦେବାମାତ୍ରେ ପୋଲିସ ସେମାନଙ୍କୁ ଗିରଫ କରି ନେଉଥିଲେ। ଯୁଦ୍ଧ ଆରମ୍ଭ ହେବା ତତ୍‌କ୍ଷଣାତ ପ୍ରଥମେ ନବରଙ୍ଗପୁର ଚର୍ଚ୍ଚର ଜଣେ ଜର୍ମାନୀ ସାହେବଙ୍କୁ ଗିରଫ କରାଯାଇଥିଲା। କାରଣ ବିଶ୍ୱ ଯୁଦ୍ଧରେ ଜର୍ମାନୀ ଇଂଲଣ୍ଡର ଶତ୍ରୁପକ୍ଷ ଥିଲା।

କୋରାପୁଟ ଜିଲ୍ଲାର ତିନିଜଣ ବିଧାୟକ—ରାଧାକୃଷ୍ଣ ବିଶ୍ୱାସରାୟ, ରାଧାମୋହନ ସାହୁ ଓ ସଦାଶିବ ତ୍ରିପାଠୀଙ୍କୁ ସର୍ବପ୍ରଥମେ ସତ୍ୟାଗ୍ରହ କରି ଗିରଫ ଦେବାକୁ ପଡ଼ିଥିଲା। ବିଶ୍ୱାସରାୟ ଗିରଫ ହୋଇସିବା ପରେ ଜିଲ୍ଲାର ବ୍ୟକ୍ତିଗତ ସତ୍ୟାଗ୍ରହୀଙ୍କ ତାଲିକା ପ୍ରସ୍ତୁତ ଓ ତାହାର ଅନୁମୋଦନ ଦାୟିତ୍ୱ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ସଭ୍ୟ ଲକ୍ଷ୍ମୀଚନ୍ଦ୍ର ଦାସଙ୍କ ଉପରେ ନ୍ୟସ୍ତ ହୋଇଥିଲା। ଏହି ସମୟରେ ପୋଲିସ ଓ ଗୁପ୍ତଚର ବିଭାଗର ତୀକ୍ଷ୍ଣ ଦୃଷ୍ଟି ସତ୍ୟାଗ୍ରହୀ ନେତାମାନଙ୍କ ଉପରେ ରହିଥିଲା। ଲକ୍ଷ୍ମୀଚନ୍ଦ୍ର ଦାସ କଟକ ସ୍ୱରାଜ ଆଶ୍ରମରୁ ଅନୁମୋଦିତ ତାଲିକା ଧରି ରାୟଗଡ଼ ପହଞ୍ଚିବା ସମୟରେ ଗୁପ୍ତଚର ବିଭାଗ କର୍ମଚାରୀମାନେ ତାଙ୍କ ପିଛା ଲାଗିଥିଲେ। ଏହା ଜାଣିପାରି ସେ ତାଲିକା ଓ ଅନ୍ୟାନ୍ୟ କାଗଜପତ୍ରକୁ ତକିଆ ଖୋଳରେ ଲୁଚାଇ ଦେଇଥିଲେ। ଦାସଙ୍କ ସହ ନାନା ପ୍ରଶ୍ନ ଓ ଯୁକ୍ତିତର୍କ ପରେ ମଧ୍ୟ ସେମାନେ ସତ୍ୟାଗ୍ରହ ସମ୍ବନ୍ଧରେ କୌଣସି ତଥ୍ୟ ପାଇ ନଥିଲେ। ଜୟପୁର ପର୍ଯ୍ୟନ୍ତ ତାଙ୍କ ସହ ଆସି ନିରାଶ ହୋଇଥିଲେ। ୨୯-୧-୪୦ ରେ ଲକ୍ଷ୍ମୀଚନ୍ଦ୍ର ଦାସ ସତ୍ୟାଗ୍ରହ କରିବା ସମୟ ନିର୍ଦ୍ଧାରିତ ହୋଇଥିଲେ ହେଁ

ତାହା ପୂର୍ବରୁ ନବରଙ୍ଗପୁରଠାରେ ଯୁଦ୍ଧ ବିରୁଦ୍ଧରେ ଏକ ସାଧାରଣ ସଭାରେ ଭାଷଣ ଦେଉଥିବା ବେଳେ ତାଙ୍କୁ କୋରାପୁଟ ଏସ୍. ପି. ଗିରଫ କରି ନେଇଯାଇଥିଲେ । ଏଥିପାଇଁ ଏକ ବର୍ଷ କାରାଦଣ୍ଡ ଶୁଣାଇଥିଲେ ।

କୋରାପୁଟ ଜିଲ୍ଲାର ବିଭିନ୍ନ ସ୍ଥାନରୁ ବ୍ୟକ୍ତିଗତ ସତ୍ୟାଗ୍ରହ ଅଭିଯୋଗରେ କଂଗ୍ରେସ ଲୋକଙ୍କୁ ଗିରଫ କରାଯାଇଥିଲା । ସେମାନଙ୍କ ବିରୁଦ୍ଧରେ ମକଦ୍ଦମା କରାଯାଇ କାରାଦଣ୍ଡ ଶୁଣାଇ ଦିଆଯାଇଥିଲା ।

ବ୍ୟକ୍ତିଗତ ସତ୍ୟାଗ୍ରହୀମାନେ କୋରାପୁଟ ଜିଲ୍ଲା ଜେଲରେ ବନ୍ଦୀ ଭାବେ ଥିବା ସମୟରେ ସଂଗ୍ରାମୀ ଡମ୍ବୁରୁ ତଳିଆ ଓ ସଦାଶିବ ବେହେରାଙ୍କ ମୃତ୍ୟୁ ହୋଇ ଯାଇଥିଲା । ଜେଲ ମଧ୍ୟରେ ଅସ୍ୱାସ୍ଥ୍ୟକର ବାତାବରଣ, କଂଗ୍ରେସ ବନ୍ଦୀମାନଙ୍କୁ ଅଖାଦ୍ୟ ଯୋଗାଣ ଓ ଚିକିତ୍ସାର ଅଭାବ ଯୋଗୁଁ ଏହି ଦୁଇଜଣ ସଂଗ୍ରାମୀଙ୍କୁ ଜୀବନ ଦେବାକୁ ପଡ଼ିଥିଲା । ଡମ୍ବୁରୁ ତଳିଆ ନିମୋନିଆ ଏବଂ ସଦାଶିବ ବେହେରା ପେଟବ୍ୟଥା ରୋଗରେ ଆକ୍ରାନ୍ତ ହୋଇ ଆବଶ୍ୟକ ଚିକିତ୍ସା ଅଭାବରୁ ମୃତ୍ୟୁ ବରଣ କରିଥିଲେ । ଏହି ଶହୀଦ ଦ୍ୱୟଙ୍କ ଶବକୁ ଲକ୍ଷ୍ମୀଚନ୍ଦ୍ର ଦାସ ଓ ସାଥୀମାନେ ଜେଲରୁ ବାହାରକୁ କାଢ଼ି ନବରଙ୍ଗପୁର କଂଗ୍ରେସ ଅଫିସର ଜିପ ଗାଡ଼ିରେ ରଖିଥିଲେ । ସେମାନଙ୍କୁ ସେହି କଂଗ୍ରେସ ଜିପରେ ନିଜ ନିବାସ ଜୟପୁରକୁ ଅଣାଯାଇଥିଲା । ସଂଗ୍ରାମୀଙ୍କ ମୃତ୍ୟୁରେ ସେହି ଦିନ କୋରାପୁଟ ଜେଲରେ ଥିବା ସମସ୍ତ କଂଗ୍ରେସ ସତ୍ୟାଗ୍ରହୀ ଉପବାସ ରହିଥିଲେ ।

କାରାଦଣ୍ଡ ଶେଷ ହେବା ପରେ କ୍ରମେ କଂଗ୍ରେସ ଲୋକେ ଜେଲରୁ ଖଲାସ ହୋଇ ପୁଣି ଦେଶ କାମରେ ସକ୍ରିୟ ଭାବେ ଲାଗିଯାଇଥିଲେ । କୋରାପୁଟ ଜିଲ୍ଲାରେ କଂଗ୍ରେସର ସଙ୍ଗଠନ ଏବଂ 'ସ୍ୱରାଜ' କାମକୁ ବ୍ୟାପକ କରିବାକୁ କାର୍ଯ୍ୟ ଆରମ୍ଭ କରାଯାଇଥିଲା । କଂଗ୍ରେସ ପକ୍ଷରୁ ଜିଲ୍ଲାର ବିଭିନ୍ନ ସ୍ଥାନରେ ସଭା ସମିତି କରାଯାଇ 'ସ୍ୱାଧୀନ ଭାରତ' ପାଇଁ 'ସ୍ୱରାଜ ସଂଗ୍ରାମ'ର ଆବଶ୍ୟକତା ଓ ଜନ ସହଯୋଗ ପାଇଁ ଆହ୍ୱାନ ଦିଆଗଲା । ସ୍ୱରାଜ୍ୟ ସଂଗ୍ରାମ ପାଇଁ ପୂର୍ବାପେକ୍ଷା ଅଧିକ ସଂଖ୍ୟକ ସତ୍ୟାଗ୍ରହୀଙ୍କୁ ବଛାଯାଇ ଜାଗ୍ରତ ଭାବେ ରଖାଗଲା । ବ୍ୟକ୍ତିଗତ ସତ୍ୟାଗ୍ରହ ସମୟରେ ସୀମାନ୍ତ କଳାହାଣ୍ଡି ଜିଲ୍ଲାରୁ ସଂଗ୍ରାମୀଙ୍କୁ ଆୟତ୍ତ କରିବା ପାଇଁ ପୋଲିସ ଅଣାଯାଇଥିଲା । ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଦ୍ୱାରା ପ୍ରତିଷ୍ଠିତ ଜାତୀୟବାଦୀ ଦୈନିକ 'ସମାଜ' ପତ୍ରିକାର ବିକ୍ରିକୁ କୋରାପୁଟ ଜିଲ୍ଲାରେ ନିଷିଦ୍ଧ କରାଯାଇଥିଲା । କଂଗ୍ରେସର ଜନସେବା ସ୍ୱଦେଶୀ କାର୍ଯ୍ୟ ଓ ପ୍ରଚାର ଦିନକୁ ଦିନ ବହୁ ଲୋକଙ୍କୁ ପ୍ରଭାବିତ କରୁଥାଏ । ହଜାର ହଜାର ଗାନ୍ଧୀ ଗୁମସ୍ତା କଂଗ୍ରେସର ତିରଙ୍ଗା ପତାକା ଧରି କୋରାପୁଟ ଜିଲ୍ଲାର ଅଗମ୍ୟ ସ୍ଥାନକୁ ପ୍ରବେଶ କରି ସ୍ୱରାଜ ବାର୍ତ୍ତା ପହଞ୍ଚାଉଥିଲେ । ନିଜ ଜୀବନ, ନିଜ ପରିବାରର ମୋହ ମାୟା କଂଗ୍ରେସ

ଲୋକଙ୍କୁ ସ୍ପର୍ଶ କରିପାରି ନଥିଲା । ମାତୃଭୂମିର ସ୍ୱାଧୀନତା ପାଇଁ ସେମାନେ ସବୁ କିଛି ତ୍ୟାଗ ସ୍ୱୀକାର କରିବାକୁ ପ୍ରସ୍ତୁତ ହୋଇ ଅଣ୍ଟାଭିଡ଼ି କଂଗ୍ରେସ କାମରେ ମାତାଲ ହୋଇଯାଇଥିଲେ । କଂଗ୍ରେସ ହିଁ ସେମାନଙ୍କ ଜୀବନ ଓ ସ୍ୱାଧୀନତା ହିଁ ତାଙ୍କ ଜୀବନର ମୋକ୍ଷ ହୋଇଥିଲା ।



୧୪

କୋରାପୁଟ ଜିଲ୍ଲା କଂଗ୍ରେସ ତାର ଦେଶ କାମରେ ଅଗ୍ରସର ହୋଇ ୧୯୪୨ ସାଲ ଅଗଷ୍ଟ ମାସରେ ପାଦଦେଲା । ଏହା ତାର ଜୀବନ ମଧ୍ୟରେ ଏକ ଗୁରୁତ୍ୱ ପୂର୍ଣ୍ଣ ମୁହୂର୍ତ୍ତ ଥିଲା । ଏହି ସମୟରେ ହିଁ କୋରାପୁଟିଆ କଂଗ୍ରେସର ଜୀବନ୍ତ କାର୍ଯ୍ୟ ଓ ଅପୂର୍ବ ତ୍ୟାଗର ନିଦର୍ଶନ ଦେଖିବାକୁ ମିଳେ ।

ଅଗଷ୍ଟ ମାସ ଦୁଇ ତାରିଖରେ କୋରାପୁଟ ଜିଲ୍ଲା କଂଗ୍ରେସ କମିଟିର ଏକ ପୂର୍ଣ୍ଣାଙ୍ଗ ଅଧିବେଶନ ଆହୂତ ହୋଇଥିଲା । ଭବିଷ୍ୟତରେ ହେବାକୁ ଥିବା ସ୍ୱାଧୀନତା ସଂଗ୍ରାମର ଫଳବତୀ ପର୍ଯ୍ୟାୟ ନେଇ ଟିକିନିଖି ପର୍ଯ୍ୟାଲୋଚନା କରାଯାଇଥିଲା । ଗାନ୍ଧୀଜୀଙ୍କ ନିର୍ଦ୍ଦେଶିତ ଅହିଂସା ସଂଗ୍ରାମ କିପରି ଭାବେ କାର୍ଯ୍ୟକାରୀ କରାଯିବ ସେଥି ନେଇ ସମସ୍ତ ନିଷ୍ପତ୍ତି ଗ୍ରହଣ କରି କଂଗ୍ରେସିଆଙ୍କୁ ସଜାଗ କରାଗଲା ।

ଅଗଷ୍ଟ ୭ ତାରିଖରେ ବମ୍ବେ ଠାରେ ନିଖିଳ ଭାରତ କଂଗ୍ରେସ କମିଟିର ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ସଭାପତି ରାଧାକୃଷ୍ଣ ବିଶ୍ୱାସରାୟ ଏଥିରେ ଯୋଗଦେଇଥାନ୍ତି । ୭ ଓ ୮ ତାରିଖ ଦିନ ପୁଙ୍ଖାନୁପୁଙ୍ଖ ଆଲୋଚିତ କଂଗ୍ରେସ ପରବର୍ତ୍ତୀ କାର୍ଯ୍ୟକ୍ରମ ନେଇ ବିଶ୍ୱାସରାୟ ଅବହିତ ହୋଇଥିଲେ । ୯ ତାରିଖରେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ କଂଗ୍ରେସ ''ଭାରତ ଛାଡ଼'' ପ୍ରସ୍ତାବ ଗୃହୀତ କରିଥିଲା । ଆନୁଷ୍ଠାନିକ ଘୋଷଣାନାମା ପ୍ରକାଶିତ ହେବା ପୂର୍ବରୁ ମହାତ୍ମା ଗାନ୍ଧୀଙ୍କ ସମେତ ବହୁ ଭାରତୀୟ ବୀର ପୁରୁଷଙ୍କୁ ଗିରଫ କରିଦିଆଗଲା । ତତ୍‌କ୍ଷଣାତ ବହୁ ଦିନରୁ ଅପେକ୍ଷିତ ଆନ୍ଦୋଳନର ପରଦା ଉନ୍ମୋଚିତ ହୋଇଯାଇଥିଲା ।

୯ ତାରିଖ ପ୍ରଭାତରେ ବିଶ୍ୱାସରାୟ କୋରାପୁଟ ଅଭିମୁଖେ କଲିକତା ମେଲରେ ବସି ଯାତ୍ରା ଆରମ୍ଭ କରିଥିଲେ । ୧୧ ତାରିଖ ଦିନ ସାଲୁରୁ ଠାରୁ ଜୟପୁର ଆସୁଥିବା ସମୟରେ ତାଙ୍କୁ ଗିରଫ କରାଯାଇ କୋରାପୁଟ ଜେଲରେ ଭର୍ତ୍ତି କରାଗଲା । "ଭାରତ ଛାଡ଼'' ପ୍ରସ୍ତାବ ଗୃହୀତ ହେବା ସଙ୍ଗେ ସଙ୍ଗେ ବ୍ରିଟିଶ ସରକାର କଂଗ୍ରେସକୁ

ବେଆଇନ ଘୋଷଣା କରିଦେଇଥିଲେ । କୋରାପୁଟ ଜିଲ୍ଲାପାଳ ଓ ଏସ୍. ପି କୟପୁରସ୍ଥିତ ଜିଲ୍ଲା କଂଗ୍ରେସ ଅଫିସ ଉପରେ ଚଢ଼ାଉ କରିଥିଲେ । କଂଗ୍ରେସ ଅଫିସର ସମସ୍ତ ରେକର୍ଡ଼ ପତ୍ର, ଟାଇପ ମେସିନ ସମେତ ଅନ୍ୟାନ୍ୟ ମୂଲ୍ୟବାନ ଜିନିଷ ପତ୍ର ଜବତ କରିଥିଲେ । ସେ ଦିନ ଜୟପୁର ଠାରେ ଜିଲ୍ଲା କଂଗ୍ରେସ ସମ୍ପାଦିକ ରାଧାମୋହନ ସାହୁ ଏବଂ ନବରଙ୍ଗପୁର ଠାରେ ସଦାଶିବ ତ୍ରିପାଠୀଙ୍କୁ ଗିରଫ କରାଯାଇଥିଲା ।

ପୂର୍ବରୁ ବିଶ୍ୱାସରାୟ ବନ୍ଦୀ ହେବା ସଙ୍ଗେ ସଙ୍ଗେ ରାଧାମୋହନ ସାହୁ, ଲକ୍ଷ୍ମୀଚନ୍ଦ୍ର ଦାସ, ବିଶ୍ୱନାଥ ପଟ୍ଟନାୟକ ପ୍ରଭୃତି ମୁଖ୍ୟ ମୁଖ୍ୟ କଂଗ୍ରେସ ଲୋକଙ୍କ ପାଖକୁ କଂଗ୍ରେସର ନୀତି ଓ କାର୍ଯ୍ୟକ୍ରମ ଚିଠି ଦ୍ୱାରା ଜଣାଇ ଦେଇଥିଲେ । ଏହି ଚିଠିରେ କଂଗ୍ରେସ ପକ୍ଷରୁ 'ଭାରତ ଛାଡ଼' ଆନ୍ଦୋଳନର କାର୍ଯ୍ୟକାରିତା ନେଇ ନିର୍ଦ୍ଦେଶାବଳୀ ରହିଥିଲା । ସମସ୍ତଙ୍କୁ ଏହି ଚିଠି ସିଧା ସଳଖ ପହଞ୍ଚି ଥିଲା । କିନ୍ତୁ ଲକ୍ଷ୍ମୀଚନ୍ଦ୍ର ଦାସ ଓ ବିଶ୍ୱନାଥ ପଟ୍ଟନାୟକଙ୍କ ପାଖକୁ ଗୁପ୍ତଭାବେ ବିଶ୍ୱାସରାୟଙ୍କ ଦ୍ୱାରା ପ୍ରେରିତ ହୋଇଥିଲା । ବିଶ୍ୱାସରାୟ ତାଙ୍କ ଚିଠି ଲକ୍ଷ୍ମୀଚନ୍ଦ୍ର ଦାସଙ୍କ ଭାଇ ରାମଚନ୍ଦ୍ର ଦାସଙ୍କ ମାଫତରେ ପଠାଇଥିବା ଜଣାପଡ଼ିବା ପରେ ତାଙ୍କୁ କାର୍ଯ୍ୟରୁ ବହିଷ୍କାର କରାଯାଇଥିଲା ।

ସେତେବେଳେ ନବରଙ୍ଗପୁର କଂଗ୍ରେସ ଅଫିସଠାରେ 'ସାଇକ୍ଲୋ ଷ୍ଟାଇଲ' ଯନ୍ତ୍ରଟିଏ ଥାଏ । ଏହା ସ୍ୱରାଜ ସଂଗ୍ରାମ ପାଇଁ ବହୁତ କାମରେ ଆସିଥିଲା । ବିଶ୍ୱାସରାୟଙ୍କ ଚିଠି ପାଇବା ପରେ ଏହି ମେସିନରେ ହଜାର ହଜାର ପ୍ରଚାର ପତ୍ର ଛପାଯାଇ ବିଭିନ୍ନ ସ୍ଥାନରେ ବଣ୍ଟନ କରାଯାଇଥିଲା । ଭାରତ ଛାଡ଼ ଆନ୍ଦୋଳନ ନେଇ ଏଥିରେ ଆହ୍ୱାନ ଥିଲା—।

'ଗାନ୍ଧୀ ମହାତ୍ମାର ଡାକ ! ସ୍ୱରାଜ ପାଇଁ ଲଢ଼େଇ କର । ନିଜକୁ ନିଜେ ନେତା ବୋଲି ଭାବ । ସରକାର ବୋଲି କେହି ନାହିଁ । ଇଚ୍ଛା ଅନୁସାରେ କାମ କର । ଟିକସ ନେଇ ଦିଅ, ଯିସ୍ତ ମେଣ୍ଟ ଦିଅ, ଯୁଦ୍ଧକୁ ସାହାଯ୍ୟ କର ନାହିଁ । ଗୋରା ସରକାର 'ଭାରତ ଛାଡ଼ ।'

ପ୍ରଚାର ପତ୍ର ପ୍ରସାରିତ ହେବା ସଙ୍ଗେ ସଙ୍ଗେ ଗାଁ ଗାଁରେ ହଟ୍ଟଗୋଳ ଲାଗିଗଲା । ଆରମ୍ଭ ହୋଇଯାଇଥିଲା । ହାଟ ବଜାରରେ ଗୋରା ସରକାର ବିରୁଦ୍ଧରେ କଂଗ୍ରେସର ଧ୍ୱନି ସାଙ୍ଗକୁ ବ୍ରିଜ ଭଙ୍ଗା ଟେଲିଫୋନ ତାର କଟା କାର୍ଯ୍ୟ ବ୍ୟାପକ ଭାବେ ଚାଲିଲା । ଜିଲ୍ଲାର ସମସ୍ତ କଂଗ୍ରେସ ଅଫିସକୁ ଜବତ କରାଗଲା । କଂଗ୍ରେସିଆର ହାତରେ ତ୍ରିରଙ୍ଗ ପତାକା, ମୁଖରୁ ମହାତ୍ମା ଗାନ୍ଧୀର ଜୟ ଓ ଭାରତ ଛାଡ଼ର ହୁଙ୍କାର । ଚିତ୍କାର କୋରାପୁଟ ଜିଲ୍ଲାର ବନ ପର୍ବତରୁ ପ୍ରତିଧ୍ୱନିତ ହୋଇଉଠିଲା ।

ନବରଙ୍ଗପୁର କଂଗ୍ରେସ ଅଫିସ ଉପରେ ପୋଲିସ ଚଢ଼ାଉ କରିବା ପୂର୍ବରୁ ସାଇକେଲ ଷ୍ଟାଇଲ ଯନ୍ତ୍ରଟି ମହମ୍ମଦ ବାଙ୍କଙ୍କ ଘରେ ଲୁଚାଇ ଦିଆଯାଇଥିଲା । ପରେ ଏହାକୁ ଜୟପୁର ପ୍ରେରଣ କରିଗଲା । ଶିବ ପ୍ରସାଦ ସବାବୁଙ୍କ ଘରେ ଏହାକୁ ରଖାଯାଇଥିଲା । ଏହି ସାଇକେଲ ଷ୍ଟାଇଲ ସନ୍ଧାନରେ ନବରଙ୍ଗପୁରର ଶ୍ୟାମସୁନ୍ଦର ତ୍ରିପାଠୀ, ଜୟପୁରର କୃଷ୍ଣଚନ୍ଦ୍ର ସାହୁ ଓ ଶିବ ପ୍ରସାଦ ସବାବୁଙ୍କୁ ଗିରଫ କରାଯାଇଥିଲା ।

ନବରଙ୍ଗପୁରରେ ଲକ୍ଷ୍ମୀଚନ୍ଦ୍ର ଦାସ, ଡା. ଅନାଜ ରାଓ, ସଦାନନ୍ଦ ମହାନ୍ତି, ମହମ୍ମଦ ବାଙ୍କ, ରଘୁନାଥ ଚୌଧୁରୀ, ସିମାଞ୍ଚଳ ବେହେରା, କୋଟପାଡ଼ରେ କପିଳ ପାଣି ଗୋପୀନାଥ ସାହୁ, ବିଶ୍ୱନାଥ ମହାପାତ୍ର, ଗୋପାଳ ବାବୁ, ଜୟପୁରରେ ଦାମୋଦର ସାହୁ, ଭଗୀରଥି ନନ୍ଦ, ନୀଳକଣ୍ଠ ସାହୁ ପଛାଟିରେ ଦୁର୍ଲ୍ଲଭ ହନ୍ତାଳ, ମାଲୁ ମାଝୀ, ନନ୍ଦପୁରରେ ଭଗବାନ ଖେମୁଣ୍ଡୁ, କାକଣଗୁମ୍ମାରେ ଅଦୁ ସାନ୍ତା, ଗୁଣ୍ଡପୁରରେ ପ୍ରହ୍ଲାଦ ପାଣିଗ୍ରାହୀ, ବିଶ୍ୱନାଥ ପଟ୍ଟନାୟକ ଉମରକୋଟରେ ଟିକସିଂ ମାଝୀ, ବଳରାମ କଲାର, ବଗା ପୂଜାରୀ, ଡାବୁଗାଁର ସନୁ ମାଝୀ, ସୁନାଧର ମାଝୀ ସମେତ ଅନ୍ୟ ବହୁ କଂଗ୍ରେସ ନେତା ଓ କର୍ମୀମାନଙ୍କୁ ଗିରଫ କରାଗଲା । କଂଗ୍ରେସିଆ ଖଦଡଧାରୀଙ୍କୁ ଦେଖିବା ମାତ୍ରେ ପୋଲିସ ଗିରଫ କରୁଥିଲେ । ଗିରଫ ପରେ ସେମାନଙ୍କୁ ପୋଲିସ ଓ ରାଜ କର୍ମଚାରୀମାନେ କଂଗ୍ରେସ କର୍ମୀ ଓ ତାଙ୍କ ପରିବାର ଉପରେ ଜୁଲମ ଓ ଦମନ ଚଳାଇଲେ । ବ୍ରିଟିଶ ସରକାରର ଜେଲ କଂଗ୍ରେସ ସଂଗ୍ରାମୀଙ୍କ ଦ୍ୱାରା ପୂର୍ଣ୍ଣ ହୋଇଯାଇଥିଲା ।

ଦୈନିକ 'ନ୍ୟୁ ଓଡ଼ିଶା' ଲେଖିଥିଲେ—

"In the wake of August Movement a mad orgy of repression was let loose. Murder, arson and rape ran rampant. The picturesque hills and dales at Koraput reverberated with the echoes of rifle firings. The traitors and reactionaries vied with one another to fighten the halter round the necks of a peaceful people."

(" ଅଗଷ୍ଟ ବିପ୍ଳବ ଅବସରରେ ଗୋଟିଏ ଉନ୍ମତ୍ତତା ଜନିତ ପାଗଳାମି ରୂପକ ଦମନକୁ ଖୋଲାଖୋଲି ଛାଡ଼ିଦିଆଗଲା । ହତ୍ୟା, ଲୁଣ୍ଠନ ଓ ଧର୍ଷଣ ଦ୍ରୁତବେଗରେ ମାଡ଼ି ଚାଲିଲା । ସୌନ୍ଦର୍ଯ୍ୟଭରା ପର୍ବତମାଳା ଓ ଉପତ୍ୟକାର କୋରାପୁଟରେ ବନ୍ଧୁକର ଗୁଳିଗୁଳନା ଧ୍ୱନି ପ୍ରତିଧ୍ୱନିତ ହେଲା । ବିଶ୍ୱାସଘାତକ ଓ ପ୍ରତିକ୍ରିୟାଶୀଳ ଗୋଷ୍ଠି

ଶାନ୍ତିପ୍ରିୟ ଜନତାଙ୍କୁ ବେକରେ ପଘାଦେଇ କଷି ବାନ୍ଧିବାକୁ ନିଜ ନିଜ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ଚଳାଇଥିଲେ ।" )

କୋରାପୁଟିଆର ପ୍ରଜା ସଂଗ୍ରାମ ଅବଧିରେ କେ. ଏସ୍. ଓ୍ୱିଲକକ୍ସ ଓ ଏଫ୍. ଇ. ଏ. ଟାଇଲର ଜିଲ୍ଲାପାଳ ଏବଂ ଏଫ୍ ଏଫ୍ ପି ଗିଲ୍ସ ଓ ପି. କେ. ମିତ୍ର ପୋଲିସ ସୁପରିଣ୍ଟେଣ୍ଡେଣ୍ଟ ଥିଲେ । ଜମିଦାରୀର ସର୍ବୋଚ୍ଚ କର୍ମଚାରୀ ଭାବେ ରହିଥିଲେ ଦେଓ୍ୱାନ ଚନ୍ଦ୍ରକୋଣ୍ଡା ଭେଙ୍କଟ ରାଓ ।



## ୧୭

ସ୍ୱରାଜ ସଂଗ୍ରାମରେ କୋରାପୁଟ ଜିଲ୍ଲାର ମାଥିଲି ଓ ପାପଡ଼ାହାଣ୍ଡି ଠାରେ ବ୍ରିଟିଶ ପୋଲିସ କଂଗ୍ରେସ ମେଳା ଉପରେ ନିର୍ମମ ଗୁଳି ବର୍ଷଣ କରିଥିଲେ । ଯାହାର ଫଳରେ କେତେଜଣ ସଂଗ୍ରାମୀ ନିହତ ହୋଇଥିଲେ ଏବଂ ବହୁ ସଂଗ୍ରାମୀ ଗୁଳିକାଣ୍ଡରେ ଆହତ ହେଲେ ।

ମାଥିଲି ଠାରେ କଂଗ୍ରେସ ସଭାରେ ବୀର ଲକ୍ଷ୍ମଣ ନାୟକ ବ୍ରିଟିସ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ପରେ ତାଙ୍କୁ ଥାନାକୁ ନିଆଯାଇଥିଲା । ସଭାରେ ଉପସ୍ଥିତ ଶହ ଶହ କଂଗ୍ରେସ କର୍ମୀ ଯେତେବେଳେ ଥାନା ଆଡ଼କୁ ଅଗ୍ରସର ହେଲେ ସେହି ସମୟରେ ବ୍ରିଟିଶ ପୋଲିସ ପକ୍ଷରୁ ଗୁଳି ଚଳାଯାଇଥିଲା । ପାପଡ଼ାହାଣ୍ଡି ତୁରା ନଦୀ ନିକଟରେ ଡାବୁଗାଁ ଅଭିମୁଖେ ଯାଉଥିବା କଂଗ୍ରେସ ଶୋଭାଯାତ୍ରୀ ଦଳ ଉପରେ ପୋଲିସ ଗୁଳି କରିଥିଲେ । ଏହି ଦୁଇଟି ଗୁଳିକାଣ୍ଡକୁ ନେଇ ବ୍ରିଟିଶ ସରକାର ଦୁଇଟି ମକଦ୍ଦମା ଶତାଧିକ ସଂଗ୍ରାମୀଙ୍କ ବିରୁଦ୍ଧରେ କରିଥିଲେ । ମାଥିଲି ଥାନା ପକ୍ଷରୁ ଲକ୍ଷ୍ମଣ ନାୟକ ସମେତ ଅନ୍ୟ ସହକର୍ମୀମାନଙ୍କୁ ନରହତ୍ୟା ମକଦ୍ଦମାରେ ଅଭିଯୁକ୍ତ କରାଯାଇଥିବା ବେଳେ ମୈଦଲପୁର ଥାନା ପକ୍ଷରୁ ସଂଗ୍ରାମୀମାନଙ୍କ ବିରୁଦ୍ଧରେ ବ୍ରିଟିସ ସରକାରଙ୍କ ବିରୁଦ୍ଧରେ ଷଡଯନ୍ତ୍ର କରିଥିବା ଅଭିଯୋଗରେ ମକଦ୍ଦମା କରାଯାଇଥିଲା ।

୧୯୪୨ ଅଗଷ୍ଟ ୨୧ ତାରିଖ । ମାଥିଲିରେ ସେ ଦିନ ସାପ୍ତାହିକ ହାଟ । ସେହି ହାଟରେ କଂଗ୍ରେସ ମେଳାର ବିରାଟ ଆୟୋଜନ । କୋରାପୁଟିଆ ଆଦିବାସୀ ସାହସୀ ପୁଅ ଲକ୍ଷ୍ମଣ ନାୟକଙ୍କ ନେତୃତ୍ୱରେ ପ୍ରାୟ ଦୁଇ ହଜାର ସ୍ୱାଧୀନତା ସଂଗ୍ରାମୀ ଶୋଭାଯାତ୍ରାରେ ବାହାରି ମାଥିଲି ଥାନାର ଅଧା ମାଇଲ ଦୂରସ୍ଥ ସ୍ଥାନରେ କଂଗ୍ରେସର ସଭା କରିଥିଲେ । ଭାରତ ଛାଡ଼ର ସ୍ଲୋଗାନ ଓ ମହାତ୍ମା ଗାନ୍ଧୀଙ୍କ ଜୟ ଧ୍ୱନିରେ ବାତାବରଣ ଉତ୍କ୍ଷିପ୍ତ ହୋଇ ଉଠିଥିଲା । ଲକ୍ଷ୍ମଣ ନାୟକ ସଭାରେ ବ୍ରିଟିଶ ସରକାର ସହ ଅସହଯୋଗ କରି ନିଜକୁ ସ୍ୱାଧୀନ ଭାବି ସମସ୍ତ ବଣ ଜଙ୍ଗଲ ଉପରେ କୋରାପୁଟିଆର

ଅଧିକାର ପ୍ରତିଷ୍ଠା କରିବାକୁ ଆହ୍ୱାନ ଦେଇଥିଲେ । ମାଠିଲି ଥାନାର ପୋଲିସ ଅଫିସର ଜଗା ନାଇକଲୁ ଦୋରା ସଭା ସ୍ଥଳରେ ପହଞ୍ଚି ଲକ୍ଷ୍ମଣ ନାୟକଙ୍କୁ ଗିରଫ କରି ଥାନାକୁ ନେଇ ଯାଇଥିଲେ ।

ଥାନାରେ ଲକ୍ଷ୍ମଣ ନାୟକଙ୍କ ଉପରେ ଅତ୍ୟାଚାର ଆରମ୍ଭ ହୋଇଯାଇଥିଲା । ବନେଟ ମାଡରେ ଲକ୍ଷ୍ମଣ ନାୟକ ରକ୍ତାକ୍ତ ହୋଇଗଲେ । ଏହା ଦେଖି ସଭାସ୍ଥଳରେ ଉପସ୍ଥିତ ସଂଗ୍ରାମୀମାନେ ଥାନା ଆଡକୁ ଅଗ୍ରସର ହେଲେ । ସଂଗ୍ରାମୀ ଆସିବା ଦେଖି ପୋଲିସ ଗୁଳି କରିବା ଆରମ୍ଭ କରିଥିଲେ । ଏହି ଗୁଳି କାଣ୍ଡରେ ଛ'ଜଣ ମୃତ୍ୟୁ ବରଣ କରି ଶହୀଦ ହୋଇଥିଲେ । ପ୍ରାୟ ଶହେଜଣ ସଂଗ୍ରାମୀ ପୋଲିସର ଲାଠି, ବନେଟ, ଗୁଳି ମାଡରେ ଆହତ ହୋଇଥିଲେ । ଏହି ଘଟଣାବେଳେ ଜୟପୁର ଜମିଦାର କର୍ମଚାରୀମାନେ ଉପସ୍ଥିତ ରହି ପୋଲିସ ଦମନରେ ନିଜକୁ ସାମିଲ କରିଥିଲେ ।

ଛ'ଜଣ ନିହତ ଶହୀଦଙ୍କ ମଧ୍ୟରୁ କେବଳ ଚାରିଜଣଙ୍କ ନାମ ସଂଗୃହୀତ ହୋଇପାରିଛି । ଅନ୍ୟ ଦୁଇଜଣଙ୍କ ନାମ ନିର୍ଦ୍ଦିଷ୍ଟ ଭାବେ ଜଣାଯାଇ ନାହିଁ । ଏହି ମୃତ ଶହୀଦମାନେ ହେଲେ—

୧) ସମର୍ପ ବଣ୍ଡିନାଦ୍ରକ—ମାଠିଲି ଥାନାର ମଣ୍ଡାରଗୁଡା ନିବାସୀ । ତାଙ୍କର ଦୁଇଗୋଟି ସ୍ତ୍ରୀ—କୌଶଲ୍ୟା ଓ ସମ୍ବାରି । ୪ଟି ସନ୍ତାନ, ଗୃହକାମ ତାଙ୍କ ଜୀବିକା ।

୨) ନରସିଂହ ବିଡମ୍ବ—ମାଠିଲି ଥାନାର ନୂଆଗୁଡା ନିବାସୀ । ସ୍ତ୍ରୀଙ୍କ ନାମ ପାଙ୍ଗି । ୩ ଗୋଟି ସନ୍ତାନ କୁଲି କାମ କରି ପରିବାର ଚଳାଇବା ତାଙ୍କର ଜୀବିକା ଥିଲା ।

୩) ଅର୍ଜୁନ କୋଟିଆ—ମାଠିଲି ଥାନାର କୁଡକଗୁଡା ନିବାସୀ । ସ୍ତ୍ରୀଙ୍କ ନାମ ଗୁରୁବାରି । ଦୁଇଟି ସନ୍ତାନ । ଜୀବିକା—କୁଲି କାମ ।

୪) ଲଚ୍ଛା କୋଟିଆ—ମାଠିଲି ଥାନାର ଟିମସପୁର ଗ୍ରାମ ନିବାସୀ । ସ୍ତ୍ରୀଙ୍କ ନାମ ଚନ୍ଦ୍ରମା । ଗୋଟିଏ ମାତ୍ର ସନ୍ତାନ । କୁଲି କାମ ହିଁ ଜୀବିକା ।

ମାଠିଲି ଗୁଳିକାଣ୍ଡ ସମୟରେ ହେମେନ୍ଦ୍ର ନ.ମଳ ଜଣେ ମାଲ୍କାନ ଫରେଷ୍ଟ ଗାର୍ଡର ମୃତ୍ୟୁ ଘଟିଥିଲା । ଏହାର ମୃତ୍ୟୁ ନେଇ ଦୁଇ ପ୍ରକାର ମତ ଦିଆଯାଉଅଛି । ପ୍ରଥମଟି ହେଲା, ଉକ୍ତ ଫରେଷ୍ଟ ଗାର୍ଡ ମାତାଲ ଅବସ୍ଥାରେ ନିକଟସ୍ଥ ଏକ ପଥର ଉପରେ ବାଡେଇ ହୋଇଯିବା ଯୋଗୁଁ ମୃତ୍ୟୁ ତାର ଘଟିଥିଲା । ଅନ୍ୟଟି ହେଲା ପୋଲିସ ଗୁଳିରେ

ସେ କାହୃତ ହୋଇଥିଲା । କିନ୍ତୁ ଏହି ବିମତ ମଧ୍ୟରୁ କେଉଁଟି ଯେ ଠିକ୍ । କାରଣ କୋରାପୁଟ ଜେଲରେ ଲକ୍ଷ୍ମଣ ନାୟକ, ଲକ୍ଷ୍ମୀଚନ୍ଦ୍ର ଦାସଙ୍କୁ ଗୁଳିକାଣ୍ଡ ସମ୍ପର୍କରେ କହିଥିଲେ—"ଗୁଳିକାଣ୍ଡ ବେଳେ କେତେ ଦୌଡ଼ି ଚାଲିଗଲେ ଓ ଆଉ କେତେଜଣ ଶୋଇପଡ଼ିଲେ । ଏହିକ୍ଷଣି ବେଳେ ଫରେଷ୍ଟ ଗାର୍ଡ, ଯିଏ ଶୋଇପଡ଼ିଥିଲା ଚାଲିଯିବାକୁ ଉଠିପଡ଼ିଥିଲା । ପୋଲିସ୍ କଂଗ୍ରେସ କର୍ମୀ ଭାବି ଗୁଳିକଲା । ସେ ସେଠାରେ ମରି ପଡ଼ିଲା ।"

( କୋରାପୁଟ ଜିଲ୍ଲା ଜେଲର ୨ ନମ୍ବର ସେଲ ଅନ୍ତର୍ଗତ ଦୁଇ ନମ୍ବର କଠୋରୀରେ ଲକ୍ଷ୍ମୀଚନ୍ଦ୍ର ଦାସଙ୍କୁ ରଖାଯାଇଥିଲା । ଲକ୍ଷ୍ମଣ ନାୟକ ଗିରଫ ହେବା ପରେ ତାଙ୍କୁ ଦାସଙ୍କ ସଂଲଗ୍ନ କଠୋରୀରେ ଭର୍ତ୍ତି କରାଗଲା । ଦାସଙ୍କ ଡାଇରୀରେ ଲକ୍ଷ୍ମଣ ନାୟକଙ୍କ ବକ୍ତବ୍ୟ ଲିପିବଦ୍ଧ ହୋଇ ରହିଅଛି । )

ଗୁଳିକାଣ୍ଡ ଘଟଣା ପରେ ୯/୧୦ ଦିନ ପର୍ଯ୍ୟନ୍ତ ଲକ୍ଷ୍ମଣ ନାୟକଙ୍କ ବ୍ୟତୀତ ଅନ୍ୟ କାହାରିକୁ ଗିରଫ କରାଯାଇ ନଥିଲା । ପରେ ଜିଲ୍ଲାପାଳ ଓ ଏସ୍. ପି ମାଟିଲି ଠାରେ ପହଞ୍ଚି ଥିଲେ । କଂଗ୍ରେସ ଲୋକଙ୍କୁ ଏବଂ ଲକ୍ଷ୍ମଣ ନାୟକଙ୍କୁ ଯେ କୌଣସି ମତେ ଦଣ୍ଡ ଦିଆଇବାକୁ ମନ୍ତ୍ରଣା କରି ମିଥ୍ୟା ମକଦ୍ଦମା ଆରମ୍ଭ କରିଥିଲେ । ଅନେକଙ୍କୁ ଏ ସମ୍ପର୍କରେ ଗିରଫ କରାଯାଇଥିଲା ।



## ୧୭

ମ. ଠକୀ ଗୁଳିକାଣ୍ଡ ପରେ ମ. ଡାଲ ଫରେଷ୍ଟ ଗାର୍ଡ ଗ୍ରାମେସ୍ୱାର ମୃତ୍ୟୁକୁ କେନ୍ଦ୍ର କରି ବ୍ରିଟିଶ ସରକାରଙ୍କ ପକ୍ଷରୁ ଲକ୍ଷ୍ମଣ ନାୟକଙ୍କ ସମେତ ୫୩ ଜଣଙ୍କ ବିରୁଦ୍ଧରେ ନରହତ୍ୟା ମକଦ୍ଦମା ଦାୟର କରାଯାଇଥିଲା । ସଂଗ୍ରାମୀମାନେ ଫରେଷ୍ଟ ଗାର୍ଡକୁ ହତ୍ୟା କଲେ ବୋଲି ପୋଲିସ ପକ୍ଷରୁ ଅଭିଯୋଗ ହୋଇଥିଲା ।

ଖୁବ୍‌ବାଲି କଥା ଶହୀଦ ବୀର ଲକ୍ଷ୍ମଣ ନାୟକଙ୍କ ନେତୃତ୍ୱରେ କଂଗ୍ରେସର ଶାନ୍ତିପ୍ରିୟ ଅହିଂସାବାଦୀ ଦଳ କିପରି ଜଣେ ମାଳୀଙ୍କୁ ଫରେଷ୍ଟ ଗାର୍ଡକୁ ହତ୍ୟା କରିବାକୁ ବାଧ୍ୟ କରି ଥିଲେ । ଏହା ଏକ ଅବାନ୍ତର ଅଭିଯୋଗ ହୋଇଥିଲେ ମଧ୍ୟ ବ୍ରିଟିଶ ସରକାର ସଂଗ୍ରାମୀମାନଙ୍କୁ ଏହି ମିଥ୍ୟା ଅଭିଯୋଗରେ ଦଣ୍ଡିତ କରି କଂଗ୍ରେସର ସ୍ୱରାଜ ସଂଗ୍ରାମକୁ ଦମନ କରିବା ମସୁଧା କରିଥିଲେ । ଚକ୍ରାନ୍ତକାରୀମାନେ ଲକ୍ଷ୍ମଣ ନାୟକଙ୍କୁ ମୃତ୍ୟୁ ଦଣ୍ଡ ଦିଆଇବାକୁ ବଦ୍ଧ ପରିକର ଥିଲେ ।

ଏହି ନରହତ୍ୟା ମକଦ୍ଦମାର ଶୁଣାଣି ପ୍ରଥମ ଷ୍ଟେସନ ଡେପୁଟି କଲେକ୍ଟର ସୋମନାଥ ମିଶ୍ରଙ୍କ ଅଦାଲତରେ ହେବାପରେ କୋରାପୁଟର ଅତିରିକ୍ତ ସେସନ୍ସ ଜଜ୍ ଭି. ରାମନାଥନଙ୍କ କୋର୍ଟରେ ଶୁଣାଣି ହୋଇଥିଲା । ଏହି ୧୮/୧୯୪୨ ନମ୍ବର ମକଦ୍ଦମାରେ ଜବାବସୁଆଲ କରିବା ପାଇଁ ପୋଲିସ ପକ୍ଷରୁ ଏ ଆପଲସ୍ୱାମୀ ଓ ଅଭିଯୁକ୍ତଙ୍କ ସପକ୍ଷରେ ଲଢ଼ିବା ପାଇଁ ଆର, ଜଗନ୍ନାଥ ରାଓଙ୍କୁ ସମ୍ରାଟଙ୍କ ପକ୍ଷରୁ ନିଯୁକ୍ତ ଦିଆଯାଇଥିଲା । ପୋଲିସ ପକ୍ଷରୁ ୩୩ ଜଣ ସାକ୍ଷୀ ସଂଗ୍ରାମୀଙ୍କ ବିରୁଦ୍ଧରେ ନିଜର ସାକ୍ଷ୍ୟ ପ୍ରଦାନ କରିଥିଲେ । ଲକ୍ଷ୍ମଣ ନାୟକଙ୍କ ପକ୍ଷରେ କେହି ସାକ୍ଷୀ ନଥିଲେ ।

ଏହି ମଉଜାମାନରେ ଅନ୍ତର୍ଭୁକ୍ତ ସଂଗ୍ରାମୀମାନେ ହେଲେ— (କେଶ ରେକର୍ଡ଼ ଅନୁଯାୟୀ ସ୍ୱୀକୃତ)

| | | | |
|---|---|---|---|
| ୧) | ଲକ୍ଷ୍ମଣ ନାୟକ | — | ଟେନ୍ତୁଳିଗୁମ୍ମା |
| ୨) | ବଳରାମ ପୂଜାରୀ | — | ମଝିଲି |
| ୩) | ଅର୍ଜୁନ ନାୟକ | — | ଟେନ୍ତୁଳିଗୁମ୍ମା |
| ୪) | ଅର୍ଜୁନ ନାୟକ | | ଉଦୟଗିରି |
| ୫) | ସମ୍ବାରୁ ନାୟକ | — | ନୂଆଗୁଡ଼ା |
| ୬) | କେନ୍ଦୁ ନାୟକ | — | ସରେଗି ଗୁଡ଼ା |
| ୭) | ଭୀମ ନାୟକ | — | କାଳିଆଗୁଡ଼ା |
| ୮) | ଜଗନ୍ନାଥ ନାୟକ | — | କାଳିଆଗୁଡ଼ା |
| ୯) | ଉଦୟନାଥ ଓଡ଼ | — | ବଂଶୀଆଘାଟ |
| ୧୦) | ନିତ୍ୟାନନ୍ଦ ଦନ୍ତାଲ | — | କୋଡ଼ିଗୁଡ଼ା |
| ୧୧) | ଚୈତନ୍ୟ ପୂଜାରୀ | — | ସାନଗୁମ୍ମା |
| ୧୨) | ଧାନଚନ୍ଦ୍ର ପୂଜାରୀ | — | ସାନଗୁମ୍ମା |
| ୧୩) | ଚନ୍ଦ୍ର ପୂଜାରୀ | — | ସାନଗୁମ୍ମା |
| ୧୪) | ବୁଲୁ ଭୂମିଆ | — | ସାନଗୁମ୍ମା |
| ୧୫) | ବଗନ ପୂଜାରୀ | — | ସାନଗୁମ୍ମା |
| ୧୬) | ରଘୁନାଥ ଭୂମିଆ | — | ସାନଗୁମ୍ମା |
| ୧୭) | ଅର୍ଜୁନ ପୂଜାରୀ | — | ସାନଗୁମ୍ମା |
| ୧୮) | ସନୁ ଓମ୍ବ | — | ସାନଗୁମ୍ମା |
| ୧୯) | ପଦ୍ମନାଭ ନାୟକ | — | କାଳିଆଗୁଡ଼ା |
| ୨୦) | ବଳରାମ ଭୂମିଆ | — | ଟେମରାପାଲି |
| ୨୧) | ଛକା ବୈରାଗୀ | — | ପୂଜାରଗୁଡ଼ା |
| ୨୨) | ଧନୁର୍ଜୟ ପୂଜାରୀ | — | ଦାକଲଗୁଡ଼ା |
| ୨୩) | ସମ୍ବାରୁ ନାୟକ | — | ପୀଠାଥୁମ୍ମା |
| ୨୪) | ଗୋପୀନାଥ ପୂଜାରୀ | — | ସାନଗୁମ୍ମା |
| ୨୫) | ବନସୀ ଭୂମିଆ | — | ଟେନ୍ତୁଳିଗୁମ୍ମା |
| ୨୬) | ଗୁରୁ କୋଠିଆ | — | ଟିମସିପୁଟ |
| ୨୭ | ନରସିଂ ଚଲଣ | — | ବେକଟୀଗୁଡ଼ା |
| ୨୮) | କୁସନ ପୂଜାରୀ | — | ବଂଶୀଆଘାଟ |

| | | | |
|---|---|---|---|
| ୨୯) | ଝଲୁ ଡମ୍ବ | — | ନେଓକୁଲାନ୍ଦ୍ରା |
| ୩୦) | ଗୁରୁ ଗୌଡ | — | କୁମ୍ଭଲପଦର |
| ୩୧) | କମା ମାଡ଼କାମୀ | — | କୈ.ଟାଇପଲି |
| ୩୨) | ହାଡିରାମ କଟିଆ | — | ଅଠଳଗୁଡ଼ା |
| ୩୩) | ସମ୍ବାରୁ ଭୂମିଆ | — | ମକାରଗୁଡ଼ା |
| ୩୪) | ହାଡିରାମ ଚଣ୍ଡାଳ | — | ଅନ୍ଧଗୁଡ଼ା |
| ୩୫) | କଣ୍ଟି ପୂନା ଝୁଣିଆ | — | ପାଲନା |
| ୩୬) | ସନ୍ନ୍ୟାସି ଭୂମିଆ | — | ହଦପୁଗିର |
| ୩୭) | ମଙ୍ଗଳ ମାଡ଼କାମି | — | ସବରିଗୁଡ଼ା |
| ୩୮) | ବନ୍ଧୁ ବମାର | — | ଡଦପୁଗିର |
| ୩୯) | ସୋମନାଥ ଭୂମିଆ | — | ହଦପୁଟିର |
| ୪୦) | କୃତ୍ତିଚନ୍ଦ୍ର ବୋଏସୀ | — | ହଦପୁଟିର |
| ୪୧) | ସୋମନାଥ ଭୂମିଆ | — | କୋଟିମା |
| ୪୨) | ସୋନ ହମର ନାୟକ | — | ଅଠଳଗୁଡ଼ା |
| ୪୩) | ହରି ପୂଜାରୀ | — | ଅଠଳଗୁଡ଼ା |
| ୪୪) | ମଙ୍ଗଳା ନାୟକ | — | ଚମ୍ପାପୁର |
| ୪୫) | ଭରି ନାୟକ | — | କୋଟାପଲି |
| ୪୬ | କଳାରାମ ଭୂମିଆ | — | ଟଣୀଆଘାଟ |
| ୪୭) | ଘୁରୁ ନାୟକ | — | ରେଙ୍ଗାଘଣ୍ଟା |
| ୪୮) | କଲାକୁଦ୍ର ଅର୍ଜୁନ | — | ବନ୍ଧରପଙ୍କ |
| ୪୯) | ନରସିଂହ ଦୁଆ | — | କୋଟାମେଟା |
| ୫୦) | ମୋହନରାମ ସିଂ ମାଡକାମି | — | ଟେଙ୍ଗୁଡ଼ା |
| ୫୧) | ଲଚ୍ଛମନ ଭୂମିଆ | — | ସାନଗୁମ୍ମା |
| ୫୨) | ଅର୍ଜୁନ ଭୂମିଆ | — | ସାନଗୁମ୍ମା |
| ୫୩) | ସମ୍ବାରୁ ଭୂମିଆ | — | ସାନଗୁମ୍ମା |
| ୫୪) | ସନିଆ ଭୂମିଆ | | ସାନଗୁମ୍ମା |

୧୯୪୨ ନଭେମ୍ବର ମାସ ୧୩ ତାରିଖରେ ମକଦ୍ଦମାର ରାୟ ପ୍ରକାଶ ପାଇଲା । ସେଥିରେ ଲକ୍ଷ୍ମଣ ନାୟକଙ୍କୁ ଭାରତୀୟ ଦଣ୍ଡବିଧି ଆଇନର ୩୦୨ ଓ ୧୪୭ ଧାରା ଏବଂ ଭାରତୀୟ ପ୍ରତିରକ୍ଷା ଆଇନର ୫ ଓ ୩୫ ଧାରାରେ ଦୋଷୀ ସାବ୍ୟସ୍ତ କରି ମୃତ୍ୟୁଦଣ୍ଡ ଆଦେଶ ହେଲା । ଅନ୍ୟମାନଙ୍କୁ ଦଣ୍ଡବିଧି ଆଇନର ୩୦୨, ୧୪୯, ୧୪୭ ଏବଂ ପ୍ରତିରକ୍ଷା

ଆଇନର ୩୦୫ ଧାରା ଅନୁଯାୟୀ ଦଣ୍ଡିତ କରାଗଲା । ୪ ଜଣ ନିର୍ଦ୍ଦୋଷରେ ଖୋଲାସ ହୋଇଥିଲେ ।

୨ରୁ ୧୦, ୧୨ ରୁ ୧୭, ୨୨ ରୁ ୫୪ ନମ୍ବର ଅଭିଯୁକ୍ତ ସଂଗ୍ରାମୀଙ୍କୁ ଦୁଇ ବର୍ଷରୁ ଆରମ୍ଭ କରି ଯାବିତଜୀବନ କାରାଦଣ୍ଡ ଦିଆଯାଇଥିଲା ।

ପାଟନା ହାଇକୋର୍ଟରେ ଲକ୍ଷ୍ମଣ ନାୟକଙ୍କ ପକ୍ଷରୁ ଅପିଲ କରାଯାଇଥିଲା । କିନ୍ତୁ ତାଙ୍କ ସପକ୍ଷରେ ବଳିଷ୍ଠ ଯୁକ୍ତିର ଅଭାବ ଯୋଗୁଁ ହାଇକୋର୍ଟ ୩୦୪ ଧାରାରେ ଫାଶୀ ଦଣ୍ଡ ଆଦେଶ କାଏମ ରଖିଲେ । କଂଗ୍ରେସ ଜାତୀୟ ପତାକା ଧରି ଏକ ଶୋଭା ଯାତ୍ରାରେ ବାହାରି ଲକ୍ଷ୍ମଣ ନାୟକଙ୍କ ନେତୃତ୍ୱରେ ସଂଗ୍ରାମୀମାନେ [common objective] ଏକ ଉଦ୍ଦେଶ୍ୟ ରଖି ନରହତ୍ୟା କଲେ ବୋଲି ହାଇକୋର୍ଟ ରାୟରେ ଦର୍ଶାଇଲେ । ଲକ୍ଷ୍ମଣ ନାୟକଙ୍କୁ ଫାଶୀ ଦଣ୍ଡରୁ କ୍ଷମାଦେବା ପାଇଁ ଆବେଦନ କରାଯାଇଥିଲେ ମଧ୍ୟ ତାହା ପ୍ରତ୍ୟାଖିତ ହୋଇଥିଲା ।

ଲକ୍ଷ୍ମଣ ନାୟକଙ୍କୁ ଫାଶୀ ଦେବାପାଇଁ ନଭେମ୍ବର ୧୭ ତାରିଖ ୧୯୪୨ ରେ କୋରାପୁଟ ଜେଲରୁ ବ୍ରହ୍ମପୁର ଜେଲକୁ ସ୍ଥାନାନ୍ତରିତ କରାଗଲା । ୨୯ ତାରିଖ ମାର୍ଚ୍ଚ ୧୯୪୩ ରେ ଲକ୍ଷ୍ମଣଙ୍କୁ ଫାଶୀ ଦେବାପାଇଁ ନିର୍ଦ୍ଦେଶ ଥିଲା । ସେହି ସମୟରେ ବ୍ରହ୍ମପୁର ଜେଲରେ କୋରାପୁଟ ଜିଲ୍ଲାର ସ୍ୱାଧୀନତା ସଂଗ୍ରାମୀ ରାଧାକୃଷ୍ଣ ବିଶ୍ୱାସରାୟ, ରାଧ ମୋହନ ସାହୁ ଓ ସଦାଶିବ ତ୍ରିପାଠୀ ଜେଲ ଦଣ୍ଡ ଭୋଗୁଥିଲେ । ୨୮ ତାରିଖ ମଧ୍ୟରାତ୍ରରେ ଫାଶୀ ଖୁଣ୍ଟକୁ ଯିବା ପୂର୍ବରୁ ତାଙ୍କୁ ଶେଷ ଇଚ୍ଛା ପଚରା ଯାଇଥିଲା । ଲକ୍ଷ୍ମଣ ନାୟକ ତାଙ୍କ କୋରାପୁଟିଆ ସବୁ କର୍ମୀଙ୍କୁ ଭେଟିବାକୁ ଚାହିଁଥିଲେ । ବିଶ୍ୱାସରାୟ, ସାହୁ ଓ ତ୍ରିପାଠୀ ଲକ୍ଷ୍ମଣ ନାୟକଙ୍କ କଟୋରାକୁ ଯିବା ସମୟରେ ଦୁଃଖରେ ମ୍ରିୟମାଣ ହୋଇ ରାଧାମୋହନ ସାହୁ ମୂର୍ଚ୍ଛିତ ହୋଇଗଲେ ଏବଂ ରାଧାକୃଷ୍ଣ ବିଶ୍ୱାସରାୟ ମଧ୍ୟ ହୃଦୟରେ ଜନ୍ମିଥିବା ଦୁଃଖର କୋହକୁ ସମ୍ଭାଳି ନପାରି ଲକ୍ଷ୍ମଣ ନାୟକଙ୍କ ସମ୍ମୁଖରେ ଠିଆ ହୋଇପାରି ନଥିଲେ । ସଦାଶିବ ତ୍ରିପାଠୀ ଲକ୍ଷ୍ମଣଙ୍କ ସହ କଥାବାର୍ତ୍ତା କରିଥିଲେ । ଦୁଇଜଣଙ୍କ ଆଖିରୁ ଲୁହ ବୋହିଯାଉଥିଲା । ତ୍ରିପାଠୀ—'ଘରେ କଣ କହିବାର ଅଛି' ବୋଲି ଲକ୍ଷ୍ମଣଙ୍କୁ ପଚାରିଥିଲେ । କୋରାପୁଟ ମାଟିର ସୁଯୋଗ୍ୟ ସନ୍ତାନ, କହିଥିଲେ—"କୋରାପୁଟିଆ ସମସ୍ତେ ମୋର ପୁଅ ଝିଅ ଭାଇ ଭଉଣୀ, ମୋ ଘରକୁ କଣ ଖବର ଦେବି, ସୂର୍ଯ୍ୟ, ଚନ୍ଦ୍ର ସତ ହୋଇଥିଲେ, ଭାରତ ନିଶ୍ଚୟ ସ୍ୱାଧୀନ ହେବ । ସ୍ୱରାଜ ଆସିବ, ମୁଁ ଦେଖି ପାରିବି ନାହିଁ । ତାହା ହିଁ ମୋର ଦୁଃଖ ।"

୨୯ ତାରିଖ ପ୍ରଭାତରେ ଲକ୍ଷ୍ମଣ ନାୟକ ବ୍ରିଟିଶ ଫାଶୀ ଖୁଣ୍ଟରେ ନିଜ ମଥା ଟେକିଦେଇ ଶହୀଦ ହୋଇଯାଇଥିଲେ । ସେ ଦିନ କୋରାପୁଟିଆ ବୀର ପୁଅର ଫାଶୀରେ ଜେଲର ସଂଗ୍ରାମୀମାନେ ବିଶେଷ ମର୍ମାହତ ହୋଇପଡ଼ିଥିଲେ ।

ମାଥିଲି ଥାନାର ଅନ୍ତର୍ଭୁକ୍ତ ସଂଗ୍ରାମୀଙ୍କ ମଧ୍ୟରେ କୋରାପୁଟ ଜିଲ୍ଲା ଜେଲରେ ଦଣ୍ଡ ଭୋଗୁଥିବା ସମୟରେ ରୋଗଗ୍ରସ୍ତ ହୋଇ ଚିକିତ୍ସା ଅଭାବରୁ ୧୬ ଜଣଙ୍କର ମୃତ୍ୟୁ ଘଟିଥିଲା । ସେମାନେ ହେଲେ—

| | | | |
|---|---|---|---|
| ୧ | ଗୋପୀନାଥ ପୂଜାରୀ | — | ସାନଗୁମ୍ମା |
| ୨ | ଗୁରୁ କୋଟିଆ | — | ଟିମସପୁର |
| ୩ | କାଣ୍ଡ୍ର ସୁନାଝରିଆ | — | କିଆଙ୍ଗ |
| ୪ | ହୃଦୟନାଥ ଓଝା | — | ବଂଶୀଆଘାଟ |
| ୫ | ବଳରାମ ଭୂମିଆ | — | ଟିମରପଲ |
| ୬ | ମଙ୍ଗଳୁ ମାଡ଼କାମୀ | — | ସରଗିଗୁଡ଼ା |
| ୭ | ସୋମନାଥ ଭୂମିଆ | — | ଉଦୟଗିରି |
| ୮ | ଚନ୍ଦ୍ର ମାଡ଼କାମୀ | — | ନାୟକଗୁଡ଼ା |
| ୯ | ଦାମା ପୂଜାରୀ | — | ଚନ୍ଦଣଗୁଡ଼ା |
| ୧୦ | ଶୁକ୍ର ଗୋଟେ | — | ସାଉଁଲଗୁଡ଼ା |
| ୧୧ | ଗୋବିନ୍ଦ କୋପେ | — | ଗାଲଗାଁ |
| ୧୨ | ସମ୍ବାରୁ ନାୟକ | — | ପିଡାପଙ୍ଗ |
| ୧୩ | ଅର୍ଜୁନ ନାୟକ | — | ସାନଗୁମ୍ମା |
| ୧୪ | ନରସିଂହ ଡମ୍ବ | — | ନସଲୁଗାଁ |
| ୧୫ | ଚୈତନ୍ୟ ପୂଜାରୀ | — | ବାକଲଗୁଡ଼ା |
| ୧୬ | ଲକ୍ଷ୍ମଣ ସମରଥ | — | ସାରଙ୍ଗପାଲି |



ସ୍ୱାଧୀନତା ସଂଗ୍ରାମରେ ନବରଙ୍ଗପୁର ସବ୍‌ଡିଭିଜନର ଏକ ମୁଖ୍ୟ ଭୂମିକା ରହିଛି । ଏହି ସବ୍‌ଡିଭିଜନର କଂଗ୍ରେସ କର୍ମୀ ଓ କଂଗ୍ରେସର ସାଙ୍ଗଠନିକ କାର୍ଯ୍ୟ ଅନ୍ୟାନ୍ୟ ଅଞ୍ଚଳ ଅପେକ୍ଷା ବହୁ ଉଚ୍ଚରେ ରହିଥିବା ପ୍ରତିପାଦିତ ହୋଇଛି । କଂଗ୍ରେସ ନେତାମାନେ ଗିରଫ ହୋଇଯିବା ପରେ ନବରଙ୍ଗପୁର ସବ୍‌ଡିଭିଜନ ନେତା ବିହୀନ ହୋଇ ଯାଇଥିଲେ ହେଁ କଂଗ୍ରେସ କର୍ମୀମାନଙ୍କ ପଥ ବିଚ୍ୟୁତ ଘଟି ନଥିଲା, ସଂଗ୍ରାମ ଚଳାଇବାକୁ ସେମାନଙ୍କ ସାହସ ଓ ମନବଳ ଭାଙ୍ଗି ପଡ଼ି ନଥିଲା ।

ନବରଙ୍ଗପୁର ନିକଟସ୍ଥ ତାପ୍ରଗାଁ ଠାରୁ ଅନତି ଦୂରରେ ଗୁମ୍ମାଗୁଡ଼ା ଗ୍ରାମ ଅବସ୍ଥିତ । ୧୯୪୨ ଅଗଷ୍ଟ ମାସ ୨୩ ତାରିଖରେ ବାଦସିହ୍ନିମିର କଂଗ୍ରେସିଆ ବାଘ ମାଧବ ପ୍ରଧାନିଙ୍କ ଅଧ୍ୟକ୍ଷତାରେ ଏକ ବିରାଟ କଂଗ୍ରେସ ସଭା ଆୟୋଜିତ ହୋଇଥିଲା । ନେତାମାନେ ଜେଲ ଭିତରେ ରହିଯାଇଥିବାରୁ ସ୍ୱାଧୀନ ସଂଗ୍ରାମର ପରବର୍ତ୍ତୀ କାର୍ଯ୍ୟକ୍ରମ କିପରି ଫଳପ୍ରଦ ଭାବେ କାର୍ଯ୍ୟକାରୀ ହେବ, ସେ ସମ୍ବନ୍ଧରେ ଏହି ସଭାରେ ବିସ୍ତୃତ ଆଲୋଚନା କରାଯାଇଥିଲା । ନବରଙ୍ଗପୁର କଂଗ୍ରେସ ପକ୍ଷରୁ ସ୍ୱାଧୀନ ସଂଗ୍ରାମ ନେଇ ଯେଉଁ ପ୍ରସ୍ତାବ ପତ୍ର ବଣ୍ଟନ ହୋଇଥିଲା, ତାହା ହିଁ ସେମାନଙ୍କ ପଥ ପ୍ରଦର୍ଶକ ବୋଲି ଧରିନିଆଯାଇ ସେ ଅନୁଯାୟୀ କାର୍ଯ୍ୟ କରିବାକୁ ନିଷ୍ପତ୍ତି ନିଆଗଲା । ସଭା ପରଦିନ (୨୪ ତାରିଖ) ତାପ୍ରଗାଁ ଠାରେ କଂଗ୍ରେସ ସଭା କରି ସାଥୀ ସଂଗ୍ରାମୀ ଭାଇମାନଙ୍କ ସହ ଆଲୋଚନା କରିବାକୁ ସ୍ଥିର କରାଯାଇଥିଲା ।

୧୯୪୨ ଅଗଷ୍ଟ ୨୪ ତାରିଖରେ ମାଧବ ପ୍ରଧାନଙ୍କ ନେତୃତ୍ୱରେ ହଜାର ହଜାର କଂଗ୍ରେସ କର୍ମୀ ଏକତ୍ରିତ ହୋଇ ଏକ ଶୋଭାଯାତ୍ରାରେ ତାପ୍ରଗାଁ ଅଭିମୁଖେ ଯାତ୍ରା କରିଥିଲେ । ହାତରେ କଂଗ୍ରେସ ପତାକା ଧରି ସଂଗ୍ରାମୀମାନେ 'ଭାରତ ଛାଡ଼'ର ଚିତ୍କାର କରି ମହାତ୍ମା ଗାନ୍ଧୀଙ୍କ ଜୟ ଡାକ ଦେଇଥିଲେ ।

ସେହି ସମୟରେ ନବରଙ୍ଗପୁର ତାପ୍ରଗାଁ ରାସ୍ତାଟି ଅଙ୍କାବଙ୍କା ପରି ଚଉଡ଼ା ନ ଥିଲା । ଏହାକୁ ହେଣ୍ଡ୍ରାଲ୍ ପ୍ରୋଡକସ୍ ରୋଡ଼ ବୋଲି କୁହାଯାଉଥିଲା । କଂଗ୍ରେସର

ଶୋଭାଯାତ୍ରା ବିଷୟରେ ପୋଲିସ ପୂର୍ବରୁ ଖବର ପାଇ ସଶସ୍ତ୍ର ପୋଲିସ ପାପଡ଼ାହାଣ୍ଡି ଠାରେ ମୁତୟନ ହୋଇଥିଲେ । ପାପଡ଼ାହାଣ୍ଡି ପୋଲିସ ଫାଣ୍ଡି ସଂଗ୍ରାମୀମାନେ ପୋଡ଼ି ପାରନ୍ତି ବୋଲି ସେମାନଙ୍କ ଆଶଙ୍କା ରହିଥିଲା । ଶିବ ମନ୍ଦିର ନିକଟରେ ଫାଣ୍ଡି ପାପଡ଼ାହାଣ୍ଡି ଥିଲା । ଏହା ମଇଦଲପୁର ଥାନା ଅନ୍ତର୍ଗତ ଥିଲା ।

ଏଠାରେ ଦର୍ଶାଇବା ଉଚିତ ହେବ ଯେ ୨୩-୮-୪୨ ତାରିଖରେ ଗୁମାଗୁଡ଼ା ଠାରେ ଅନୁଷ୍ଠିତ କଂଗ୍ରେସ ବୈଠକରେ କେତେକ ସଂଗ୍ରାମୀ ଉତ୍ତ୍ୟକ୍ତ ହୋଇ ଥାନା ପୋଡ଼ିବାକୁ ଏବଂ ବ୍ରିଜ ଭାଙ୍ଗିବାକୁ ଆହ୍ୱାନ ଦେଇଥିଲେ । ଏହା ପୂର୍ବରୁ ଜଟାବାଲ ସମେତ ଅନ୍ୟାନ୍ୟ ସ୍ଥାନର ବ୍ରିଜ ସଂଗ୍ରାମୀମାନଙ୍କ ଦ୍ୱାରା ଭାଙ୍ଗି ଦିଆଯାଇ ଥିଲା । ଏହି ବ୍ରିଜ ଭଙ୍ଗା ଅଭିଯୋଗରେ ଲକ୍ଷ୍ମୀଚନ୍ଦ୍ର ଦାସ, ମହମ୍ମଦ ବାଙ୍ଗ, ମାଧବ ପ୍ରଧାନଙ୍କ ସମେତ ଅନ୍ୟାନ୍ୟ ସହକର୍ମୀଙ୍କୁ ଗିରଫ କରି କାରାଦଣ୍ଡାଦେଶ ହୋଇଥିଲେ । କଂଗ୍ରେସ ସଂଗ୍ରାମୀମାନଙ୍କ ଦ୍ୱାରା ଟେଲିଫୋନ ତାର କଟାଯିବା ଏବଂ ଖୁଣ୍ଟି ଉପାଡ଼ି ଦେବା କାର୍ଯ୍ୟ କରାଯାଇଥିଲା ।

କଂଗ୍ରେସ ପତାକା ଶୋଭିତ, ଭାରତ ମାତାର ଜୟଗାନ ଓ ଭାରତ ଛାଡ଼ ସ୍ଲୋଗାନରେ ପ୍ରକମ୍ପିତ କଂଗ୍ରେସ ସଂଗ୍ରାମୀଙ୍କ ଶୋଭାଯାତ୍ରା ୨୪ ତାରିଖରେ ପାପଡ଼ାହାଣ୍ଡି ନିକଟସ୍ଥ ତୁମ୍ବୀ ନଦୀ ନିକଟରେ ପହଞ୍ଚି ଥିଲା । ବର୍ଷା ଋତୁ ଯୋଗୁଁ ନଦୀ ଜଳ କୂଳ ଉଚ୍ଛୁଳୁ ଥିଲା । ସଂଗ୍ରାମୀମାନେ ତିରଙ୍ଗା ପତାକା ସହ ଟାଙ୍ଗୀ, ଠେଙ୍ଗା, ବର୍ଚ୍ଛା, କଟୁରୀ ଆଦି ନିଜ ସଙ୍ଗରେ ନେଇଥିଲେ ।

'ତୁମ୍ବୀ' ନଦୀ ତଟରେ ସଂଗ୍ରାମୀମାନେ ପାଦଦେବା ସଙ୍ଗେ ସଙ୍ଗେ ସଶସ୍ତ୍ର ପୋଲିସ ପହଞ୍ଚି ଯାଇଥିଲେ । ଏମାନେ ନଦୀର ଉତ୍ତରକୁ ଥିବା ମାଟି ରାସ୍ତାଦେଇ ଆସିଥିଲେ । ପୋଲିସ ଦୁଇ ଦଳରେ ବିଭକ୍ତ ହୋଇ ସଂଗ୍ରାମୀମାନଙ୍କ ଉପରେ ଲାଠି ଓ ବେନେଟ ମାଡ଼ ଆରମ୍ଭ କରିଦେଲେ । ପୋଲିସ ସଂଗ୍ରାମୀଙ୍କୁ କ୍ଷତ ବିକ୍ଷତ କରୁଥିବା ସମୟରେ ମୋଟର ଏକ ଟ୍ରକ 'ତୁମ୍ବୀ' ନଦୀ ଉତ୍ତର ପଟେ ଆସି ରହି ଯାଇଥିଲା । ପୂର୍ବ ଓ ପଶ୍ଚିମ ଦିଗରେ ତୁମ୍ବୀ ନଦୀର ବନ୍ୟାପ୍ଲାବିତ ଜଳ, ଦକ୍ଷିଣ ଦିଗରେ ପୋଲିସ ବାହିନୀ ଓ ଉତ୍ତର ପଟେ ପୋଲିସ ଗାଡ଼ିର ଘେର ମଧ୍ୟରେ ସଂଗ୍ରାମୀମାନେ ରହିଗଲେ । ପୋଲିସ ଡ଼ି ଏସ. ଆଇ କେ ଗୌଡ଼ଙ୍କ ଅଧୀନରେ ୧୦ ଜଣ ସଶସ୍ତ୍ର ସିପାହୀ ସଂଗ୍ରାମୀମାନଙ୍କ ଉପରେ ଗୁଳି ଚଳାଇବା ଆରମ୍ଭ କରିଦେଇଥିଲେ । ସଂଗ୍ରାମୀଙ୍କୁ ଖସି ପଳାଇବାକୁ ରାସ୍ତା ନଥିଲା । କେତେଜଣ ତୁମ୍ବୀ ନଦୀ ମଧ୍ୟରେ ଡେଇଁ ପଡ଼ିଥିଲେ । ୧୧ ଜଣ ସଂଗ୍ରାମୀ ପୋଲିସ ଗୁଳିରେ ଘଟଣା ସ୍ଥଳରେ ମୃତ୍ୟୁ ବରଣ କରିଥିଲେ । ଦକ୍ଷିଣ ପଟେ ରହିଯାଇଥିବା ସଂଗ୍ରାମୀଙ୍କୁ ପୋଲିସ ଲାଠି ପ୍ରହାର ଓ ବେନେଟ ମାଡ଼ଦେଇ ଘୋଷାଡ଼ି ନେଇଥିଲେ । ପ୍ରାୟ ଏକଶହ

ଜଣ କଂଗ୍ରେସ କର୍ମୀ ପୋଲିସର ଲାଠି ଓ ବନେଟ ମାଡ଼ରେ ଗୁରୁତର ଭାବେ ଆହତ ହୋଇଥିଲେ । ୧୪୦ ଜଣ ସଂଗ୍ରାମୀଙ୍କୁ ଗିରଫ କରାଯାଇଥିଲା । ଗୁଳି ମାଡରେ ଆହତ ଆଠଜଣ ସଂଗ୍ରାମୀଙ୍କ ନବରଙ୍ଗପୁର ଡାକ୍ତରଖାନାରେ ମୃତ୍ୟୁ ଘଟିଥିଲା ।

ଏହି ଗୁଳିକାଣ୍ଡରେ ନିହତ ସଂଗ୍ରାମୀମାନେ ହେଲେ—

| | | | |
|---|---|---|---|
| ୧) | ବସ୍ତରିଆ ଭତରା | — | ଦଳେଇଗୁଡ଼ା |
| ୨) | ସଦୁ ଭତରା | — | ନନ୍ଦାହାଣ୍ଡି |
| ୩) | ବଳି ସଉରା | — | ଚଣ୍ଡା |
| ୪) | ବୁଦୁ ଅମନାତ୍ୟ | — | ଡମୁରପଦର |
| ୫) | ରତନ ରନ୍ଧାରୀ | — | ତୁରୁଣ୍ଡି |
| ୬) | ଶୁକ୍ରୁ ମୁଦୁଲି | — | ମୁର୍ଲାବାଇ |
| ୭) | ଖଗପତି ଅମନାତ୍ୟ | — | କଂଗ୍ରା |
| ୮) | ଭରତ ପୂଜାରୀ | — | ଡମୁରପଦର |
| ୯) | ରାମଚନ୍ଦ୍ର ଅମନାତ୍ୟ | — | ଫୁଫୁଣ୍ଡାଁ |
| ୧୦) | ଘାସି ଜାନି | — | ନୂଆଗାଁ |
| ୧୧) | ଦୀନବନ୍ଧୁ ଜାନି | — | ନୂଆଗାଁ |
| ୧୨) | ବୁଦୁ ଅମନାତ୍ୟ | — | ବୁରୁଞ୍ଜୀ |
| ୧୩) | ଜଗନ୍ନାଥ ଅମନାତ୍ୟ | — | ପାଯପୁଟ |
| ୧୪) | ସଦେବ ପୂଜାରୀ | — | ସଡେଇଗୁଡା |
| ୧୫) | ମଙ୍ଗରୁ ଭଯା | — | ଉମରଗାଁ |
| ୧୬) | ଆନନ୍ଦ ଗୌଡ଼ | — | ଦୁଃଖୁଗୁଡ଼ା |
| ୧୭) | ପରମାନନ୍ଦ ସଉରା | — | ମଲ୍ଲୀଗୁଡ଼ା |
| ୧୮) | ଭଗବାନ ଭଯା | — | ମଲ୍ଲୀଗୁଡ଼ା |
| ୧୯) | ଶ୍ୟାମସୁନ୍ଦର ଗୌଡ | — | ସବୁଗୁଡା |

ତୁରୀ ନଦୀର କୂଳରେ ବ୍ରିଟିଶର ଗୁଳି ବର୍ଷଣ ଚାଲିଥିବା ସମୟରେ ଜଣେ ସଂଗ୍ରାମୀ ସି.—୧୬୦ ନମ୍ବର ସିପାହୀକୁ ଟାଙ୍ଗି ମାଡରେ ଆହତ କରିଥିଲେ । ଉକ୍ତ ଆହତ ସିପାହୀର ନାମ ଏ ମୁତ୍ୟାଲୁ । ତାଙ୍କ କାନ ଚଛପଟେ ଟାଙ୍ଗି ମାଡ ହୋଇଥିଲା ।

ଗୁଳିକାଣ୍ଡରେ ଗୁଳିଚଳର ଫଳରେ ଆହତ ହୋଇଥିବା ସଂଗ୍ରାମୀମାନେ ହେଲେ—

୧) ମାଲାମୂର ମାଝୀ—ତେନ୍ତୁଳିଖୁଣ୍ଟି ଥାନା ଅନ୍ତର୍ଗତ ବଣାଗୁଡା ଗ୍ରାମନିବାସୀ । ତାଙ୍କ ଡାହାଣ କାନ୍ଧରେ ଗୁଳିମାଡ଼ ହୋଇଥିଲା ।

୨) ମଧୁ ଭତ୍ରା ନବରଙ୍ଗପୁର ଥାନା ଅନ୍ତର୍ଗତ ମାଣନାହାଣ୍ଡି ଗ୍ରାମନିବାସୀ, ତାଙ୍କର ବାମ ହାତରେ ଗୁଳିମାଡ଼ ହୋଇଥିଲା ।

୩) ମୁଧୁଷ୍ଟିର ପାଇକ—ତେନ୍ତୁଳିଖୁଣ୍ଟି ଥାନାର ଅମଲାଭଟା ଗ୍ରାମନିବାସୀ, ତାଙ୍କର ଗୋଡରେ ଗୁଳିମାଡ ହୋଇଥିଲା ।

୪) ସୁନାଧରଅମନାତ୍ୟ—ତେନ୍ତୁଳିଖୁଣ୍ଟି ଥାନାର ଉପୁରପଦର ଗ୍ରାମନିବାସୀ । ତାଙ୍କର ଜଙ୍ଘରେ ଗୁଳିମାଡ଼ ହୋଇଥିଲା ।

୫) ବଳରାମ ଗୌଡ—ତେନ୍ତୁଳିଖୁଣ୍ଟି ଥାନାର ଭୁରଣ୍ଡି ଗ୍ରାମନିବାସୀ । ତାଙ୍କର ଗୋଡରେ ଗୁଳିମାଡ଼ ହୋଇଥିଲା ।

୬) ସମ୍ବାରୁ ମୁଦୁଲି— ତେନ୍ତୁଳିଖୁଣ୍ଟି ଥାନାର ମୂଳବାଇ ଗ୍ରାମନିବାସୀ । ଗୁହ୍ୟର ଡାହାଣ ପଟେ ଗୁଳିମାଡ ହୋଇଥିଲା ।

୭) ସମ୍ବାରୁ ଅମନାତ୍ୟ—ନବରଙ୍ଗପୁର ଥାନାର ଏକମ୍ବା ଗ୍ରାମନିବାସୀ । ତାଙ୍କର ଗୁପ୍ତାଙ୍ଗରେ ଗୁଳିମାଡ଼ ହୋଇଥିଲା ।

୮) ସାନ ପାଇକ—ତେନ୍ତୁଳିଖୁଣ୍ଟି ଥାନାର ରସିଆଗୁଡା ଗ୍ରାମନିବାସୀ । ହାତରେ ଗୁଳିମାଡ ହୋଇଥିଲା ।

୯) ନଧି ଅମନାତ୍ୟ—ନବରଙ୍ଗପୁର ଥାନାର କଂରା ଗ୍ରାମନିବାସୀ । ହାତ ପାପୁଲିରେ ଗୁଳିମାଡ଼ ହୋଇଥିଲା ।

୧୦) ସୁନ୍ଦମ ଭତ୍ରା—ପାପଡାହାଣ୍ଡି ଥାନାର ମଲ୍ଲୀଗୁଡା ଗ୍ରାମନିବାସୀ । ତାଙ୍କର ଡାହାଣ ହାତରେ ଗୁଳିମାଡ ହୋଇ ସମସ୍ତ ଅଙ୍ଗୁଳି ଛିଣ୍ଡି ଯାଇଥିଲା ।

(୧୧) କାଷ୍ଠି ଅମନାତ୍ୟ—ତେନ୍ତୁଳିଖୁଣ୍ଟି ଥାନାର ଘାଟଗୁଡ଼ା ଗ୍ରାମବାସୀ । ତାଙ୍କର ଅଣ୍ଟାରେ ଗୁଳିମାଡ଼ ହୋଇଥିଲା । ଡାକ୍ତରଖାନାରେ ଭର୍ତ୍ତି ହେବାପରେ ଗୁଳି ବାହାର କରାଯାଇଥିଲା ।

(୧୨) ମଧୁ ଭତ୍ରା—ପାପଡ଼ାହାଣ୍ଡି ଥାନାର ମଲ୍ଲୀଗୁଡ଼ା ଗ୍ରାମବାସୀ । ତାଙ୍କ ଗୁଡ଼ର ବାମପଟେ ଗୁଳି ମାଡ଼ ହୋଇଥିଲା । ଗୁଳି ତାଙ୍କ ଗୁଡ଼ ଭେଦ କରିଥିଲା । ଗୁଡ଼ ଓ ପିଠିରେ ଗୁଳି ମାଡ଼ ଚିହ୍ନ ରହିଥିଲା ।

ଭୁଷ୍ଣା ନଦୀ ନିକଟରେ କଂଗ୍ରେସ କର୍ମୀମାନଙ୍କ ଶୋଭା ଯାତ୍ରା ଉପରେ ପୋଲିସର ନୃଶଂସ ଆକ୍ରମଣ ସେମାନଙ୍କ ଗନ୍ତବ୍ୟ ସ୍ଥଳରେ ପହଞ୍ଚିବାରେ ବାଧା ସୃଷ୍ଟି କରିଥିଲା । ଡାବୁଗାଁ ସଭାକୁ ସେମାନେ ଯାଇପାରି ନଥିଲେ । ଏହି ଶୋଭାଯାତ୍ରାରେ ଯୋଗ ଦେଇଥିବା ସଂଗ୍ରାମୀମାନଙ୍କୁ ଗିରଫ କରାଯାଇଥିଲା । ସେମାନଙ୍କୁ ନବରଙ୍ଗପୁର ପଠାଣ ସାହିରେ ଥିବା ପ୍ରାଥମିକ ସ୍କୁଲରେ ବନ୍ଦୀ କରି ରଖାଯାଇଥିଲେ । ସେଠାରେ ସ୍ଥାନାଭାବ ହେବାରୁ ଥାନା ପଛପଟେ ଥିବା ଜେଲରେ ଅବଶିଷ୍ଟ ସଂଗ୍ରାମୀଙ୍କୁ ରଖାଗଲେ । ସେମାନଙ୍କ ନାମରେ ବ୍ରିଟିଶ ସରକାର ମିଥ୍ୟା ଅଭିଯୋଗ ଲଗାଇ ମକଦ୍ଦମା କରିଥିଲେ ।



ପାପଡ଼ାହାଣ୍ଡିର ଅବିସ୍ମରଣୀୟ ଗୁଳିକାଣ୍ଡ ଘଟାଇ ବ୍ରିଟିଶ ସରକାର ସଂଗ୍ରାମୀମାନଙ୍କ ମନବଳ ଭାଙ୍ଗିବାକୁ ଉଦ୍ୟମ କରିଥିଲେ । ସଂଗ୍ରାମୀମାନଙ୍କୁ ଦଣ୍ଡ ଦେଇବା ଉଦ୍ଦେଶ୍ୟରେ ସେମାନଙ୍କ ବିରୁଦ୍ଧରେ ନାନା ଅଭିଯୋଗରେ ମକଦ୍ଦମା କରାଗଲା । ବିପ୍ଳବୀ ସଂଗ୍ରାମୀ ଭାବେ ପରିଚିତ ଲକ୍ଷ୍ମୀଚନ୍ଦ୍ର ଦାସ ଓ ମାଧବ ପ୍ରଧାନଙ୍କୁ ଯେ କୌଣସି ମତେ ଦମନ କରିବାକୁ ବ୍ରିଟିଶ ସରକାର ନିଷ୍ପତ୍ତି କରିଥିଲେ । ତାଙ୍କର ଆହ୍ୱାନ ଓ ନେତୃତ୍ୱରେ ସଂଗ୍ରାମୀମାନେ ବ୍ରିଟିଶର ସାର୍ବଭୌମତ୍ୱକୁ ଆହ୍ୱାନ କରୁଥିବା ଏବଂ ପୋଲିସଥାନା ପୋଡ଼ିବା ବ୍ରିଜ ଭାଙ୍ଗିବା ଓ ପୋଲିସ ରିଜର୍ଭ ବାହିନୀର ସିପାହୀଙ୍କୁ ହତ୍ୟା କରିବାପାଇଁ କାର୍ଯ୍ୟକ୍ରମ ରଚିଛନ୍ତି ବୋଲି ବ୍ରିଟିଶ ପୋଲିସ ଉଚ୍ଚ କର୍ତ୍ତୃପକ୍ଷଙ୍କୁ ତଥ୍ୟ ପ୍ରେରଣ କରିଥିଲେ ।

ବ୍ରିଟିଶ ସରକାରଙ୍କ ସାର୍ବଭୌମତ୍ୱକୁ ଆହ୍ୱାନ କରି ସଂଗ୍ରାମୀମାନେ ସରକାରଙ୍କ ବିରୁଦ୍ଧରେ ଏକ ବଡ଼ ଧରଣର ଷଡ଼ଯନ୍ତ୍ରରେ ଲିପ୍ତଥିବା ଅଭିଯୋଗରେ ମେଦିଲପୁର ଥାନା ପକ୍ଷରୁ ଲକ୍ଷ୍ମୀଚନ୍ଦ୍ର ଦାସ ଓ ମାଧବ ପ୍ରଧାନଙ୍କ ସମେତ ୯୨ ଜଣ ସଂଗ୍ରାମୀଙ୍କ ବିରୁଦ୍ଧରେ ମକଦ୍ଦମା ଦାୟର କରାଯାଇଥିଲା । ମେଦିଲପୁର ଥାନା ପକ୍ଷରୁ ଆଗତ ମକଦ୍ଦମା ନମ୍ବର ୫୫/୪୨ ରେ ଭାରତୀୟ ଦଣ୍ଡ ବିଧି ଆଇନର ୧୪୭/୧୪୮/୧୪୯/ ୩୦୭ ଓ ୩୩୨ ଧାରାରେ ସଂଗ୍ରାମୀଙ୍କୁ ଅଭିଯୁକ୍ତ କରାଗଲା । ଏହି ଅଭିଯୁକ୍ତ ସଂଗ୍ରାମୀମାନେ ହେଲେ (କେଶ ରେକର୍ଡ଼ ଅନୁଯାୟୀ ସଙ୍କଳିତ)—

୧ ଗୁରୁ ଡ଼ମ୍ବ — ସାନକୁମୁଲି
୨ ନରସିଂହ ଭୂଯା — ସାନକୁମୁଲି
୩ ଜୟସିଂ ଡ଼ମ୍ବ — ସାନକୁମୁଲି
୪ ମାଧବ ସଓରା — ଭରଣପୁର
୫ ଦାସ ଭୂଯା — ଧାରଣାବେଡ଼ା
୬ ହରି ଭୂଯା — ଧାରଣାବେଡ଼ା

| | | | |
|---|---|---|---|
| ୭ | ମାଧବ ପରଜା | — | ଅମଲାଭଟା |
| ୮ | ବୃଟି ପରଜା | — | ଅମଲାଭଟା |
| ୯ | ସନୁ ଅମନାତ୍ୟ | — | ଫୁଫୁଗାଁ |
| ୧୦ | ରଘୁନାଥ ଅମନାତ୍ୟ | — | ଫୁଫୁଗାଁ |
| ୧୧ | ବୁଦୁ ଅମନାତ୍ୟ | — | ବାଘସିଙ୍ଗା |
| ୧୨ | ଲିଛମନ ଅମନାତ୍ୟ | — | ବାଘସିଙ୍ଗା |
| ୧୩ | ମଙ୍ଗୁଳି ଅମନାତ୍ୟ | — | ବାଘସିଙ୍ଗା |
| ୧୪ | ଢେଣ ଅମନାତ୍ୟ | — | ବାଘସିଙ୍ଗା |
| ୧୫ | ଫନୁଶୁ ଭତ୍ରା | — | ନାଗୁଆଗୁଡ଼ା |
| ୧୬ | ମାଧବ ପ୍ରଧାନ | — | ପାଇପୁଟ |
| ୧୭ | ସନୁ ଭତ୍ରା | — | ପାଇପୁଟ |
| ୧୮ | ଲକ୍ଷ୍ମଣ ନାୟକ | | କଣ୍ଟାଗାଁ |
| ୧୯ | ଦେଳୁଆ ମାଝୀ | — | ଧଣ୍ଡ୍ରା |
| ୨୦ | ଭଗବାନ ପାଇକ | — | ଧଣ୍ଡ୍ରା |
| ୨୧ | ଜୟରାମ ଭତ୍ରା | — | ମଣ୍ଡୀଗୁଡ଼ା |
| ୨୨ | ପୁରୁଷୋତ୍ତମ ଅମନାତ୍ୟ | — | ଭୁସୁରପଦର |
| ୨୩ | କାର୍ତ୍ତିକ ଭତ୍ରା | — | ଦଳେଇପଡ଼ା |
| ୨୪ | କ୍ଷାଡ଼ ଅମନାତ୍ୟ | — | ପାଇପୁଟ |
| ୨୫ | ଗୋବିନ୍ଦ ଲଣ୍ଡୁ ପରଜା | — | ମଣ୍ଡୀଗୁଡ଼ା |
| ୨୬ | କୃଷ୍ଣ ଗୌଡ଼ | — | ତଣ୍ଡାଗାଁ |
| ୨୭ | କମୁଳୁ ଗୌଡ଼ | — | ତଣ୍ଡାଗାଁ |
| ୨୮ | ଦାମନ ପରଜା | — | ମୁଣ୍ଡଖିଗୁଡ଼ା |
| ୨୯ | ଡମ୍ବରୁଧର ଦାସ | — | ସବୁଗୁଡ଼ା |
| ୩୦ | ଦେଳୁଆ ଗୌଡ଼ | — | ସବୁଗୁଡ଼ା |
| ୩୧ | ତ୍ରିଲୋଚନ ଭତ୍ରା | — | ନରସିଂହଗୁଡ଼ା |
| ୩୨ | ସୁନାଧର ଅମନାତ୍ୟ | — | ଭୁସୁରପଦର |
| ୩୩ | ସମ୍ବାରୁ ଅମନାତ୍ୟ | — | ଏକମ୍ବା |
| ୩୪ | ପଦ୍ମନାଭ ଗୌଡ଼ | — | କାମୁଗୁଡ଼ା |
| ୩୫ | ଶ୍ୟାମସୁନ୍ଦର ସ୍ୱରୂପ | — | ଘଟିଗାଁ |
| ୩୬ | ଚକ୍ରପାଣି ଡମ୍ବୁ | — | ମଣ୍ଡୀଗୁଡ଼ା |

| | | | |
|---|---|---|---|
| ୩୭ | ଦୁଲଭ ଭତରା | — | ଡେଙ୍ଗପଦର |
| ୩୮ | ସମ୍ବାରୁ ପରଜା | — | ମୁଚଲ୍ଲୁବାଇ |
| ୩୯ | ଗୁଦୁ ଅମନାତ୍ୟ | — | ଉଦୁଲପଦର |
| ୪୦ | ମାଲାମ୍ବର ଭତରା | — | ବିସାଗୁଡ଼ା |
| ୪୧ | ସୁନାଧର | — | ଧଣ୍ଡରା |
| ୪୨ | ଲବାଣ୍ୟ ଭତରା | — | ସାନକୁମୁଲି |
| ୪୩ | ମାଧବ ପ୍ରଧାନୀ | — | ବାଦଟିହୁମା |
| ୪୪ | ଯୁଧୀଷ୍ଠିର ପଇକ | — | ଅମଲାଭଟ୍ଟା |
| ୪୫ | ବୁଦୁ ଭତରା | — | ଭିମାଗୁଡ଼ା |
| ୪୬ | କାସୁନା ଭଶା | — | ନରସିଂହଗୁଡ଼ା |
| ୪୭ | ମହାଦେବ ସଉରା | — | ଭରଣପୁର |
| ୪୮ | ସଦନ ଭତରା | — | ବିରଗୁଡ଼ା |
| ୪୯ | ସଦନ ଭତରା | — | ମଲ୍ଲୀଗୁଡ଼ା |
| ୫୦ | ନନ୍ଦ ଭତରା | — | ମଲ୍ଲୀଗୁଡ଼ା |
| ୫୧ | ମଧୁ ଭତରା | — | ମଲ୍ଲୀଗୁଡ଼ା |
| ୫୨ | ସୁଭାନ ଭତରା | — | ମଲ୍ଲୀଗୁଡ଼ା |
| ୫୩ | କୁମା ଭତରା | — | ମଲ୍ଲୀଗୁଡ଼ା |
| ୫୪ | ବଳି ସୌରା | — | ହୁସୁରପଦର |
| ୫୫ | ବୃନ୍ଦ ପାଇକ | — | ବଡ଼ଗାଁ |
| ୫୬ | ଗିରିଧାରୀ ତେଲି | — | ଧଣ୍ଡରା |
| ୫୭ | ମଙ୍ଗି ଭତରା | — | କଣ୍ଡାଗାଁ |
| ୫୮ | କୃପା ହାଲୁଆ | — | ଭରଣପୁର |
| ୫୯ | ଡମ୍ବରୁଧର ସଉରା | — | ଭରଣପୁର |
| ୬୦ | ଗଙ୍ଗାଧର ପରଜା | — | ମୁଣ୍ଡାଗୁଡ଼ା |
| ୬୧ | ରଘୁନାଥ ରନ୍ଧାରୀ | — | ରୁରୁଞ୍ଜୀ |
| ୬୨ | ବୁଡ଼ା ଜନ୍ନ | — | ଧଣ୍ଡରା |
| ୬୩ | ନରସିଂହ ଭତରା | — | ଝରିଗୁମ୍ମା |
| ୬୪ | ପଦ୍ମନାଭ ଗୌଡ | — | ବନ୍ଧଗୁଡ଼ା |
| ୬୫ | ଚୈତନ୍ୟ ଦାସ | — | କୁସୁମୀ |
| ୬୬ | ସୁକ୍ରା ଜାନି | — | କୁକୁଡ଼ାବାଇ |
| ୬୭ | ସୁକ୍ରା ମୁଦୁଲି | — | ବିସାଗୁଡ଼ା |

| | | | |
|---|---|---|---|
| ୬୮ | ଚୈତନ୍ୟ ଝଲାଗି | — | କୁରୁମୁଲି |
| ୬୯ | କନେଇ ଭତ୍ରା | — | ଝମୁର |
| ୭୦ | ଚୁକୁଣ୍ଡ ପରଜା | — | ଜାମଣ୍ଡା |
| ୭୧ | ସଦନ ପାଇକ | — | ଗାଡ଼ିଗାଁ। |
| ୭୨ | ଅର୍ଜୁନ ମାଝୀ | — | ନନ୍ଦାହାଣ୍ଡି |
| ୭୩ | ଗୋବର୍ଦ୍ଧନ ଜାଦବ | — | ମୁରାଲି |
| ୭୪ | ଦାସୀ ଜାନି | — | ମଙ୍ଗଳାଗୁଡ଼ା |
| ୭୫ | କୁଲକଣ୍ଠା ଅମନାତ୍ୟ | — | ରୁଚୁଣ୍ଡି |
| ୭୬ | ବଳରାମ ଭତରା | — | କେନ୍ଦୁଗୁଡ଼ା |
| ୭୭ | ଡମ୍ବରୁଧର ଭତ୍ରା | — | କଣ୍ଠାଗୁଡ଼ା |
| ୭୮ | ବଳରାମ ଗଣ୍ଡ | — | ରୁଚୁଣ୍ଡି |
| ୭୯ | ନଧୁ ସୌରା | — | କଂଗ୍ରା |
| ୮୦ | ବୁଟି ଅମନାତ୍ୟ | — | ଦାଟଗୁଡ଼ା |
| ୮୧ | ଡମ୍ବରୁଧର ଭତରା | — | ଗୁଣିଆଗୁଡ଼ା |
| ୮୨ | କୁର୍ମନାଥ ଭତରା | — | ଗୁଣିଆଗୁଡ଼ା |
| ୮୩ | ଆନନ୍ଦ ଭତ୍ତରା | — | ହଲପା |
| ୮୪ | ରଘୁ ଅମନାତ୍ୟ | — | ପଟେଡଙ୍ଗଗୁଡ଼ା |
| ୮୫ | ଧନଆ ମୁଦୁଲି | — | ବିନ୍ତିଗୁଡ଼ା |
| ୮୬ | ପାକୁଲୁ ମୁଦୁଲି | — | ବିନ୍ତିଗୁଡ଼ା |
| ୮୭ | ଜୟସିଂ ପାଣି | — | ଖାଣପୁଟ |
| ୮୮ | ପିରୁ ଅମନାତ୍ୟ | — | ପିଡାକୁମ୍ଭଲି |
| ୮୯ | ଚୈତନ୍ୟ ପାଇକ | — | ପଥରକଲସା |
| ୯୦ | ମଧୁ ଭତ୍ରା | — | ନନ୍ଦାହାଣ୍ଡି |
| ୯୧ | ଲକ୍ଷ୍ମୀଚନ୍ଦ୍ର ଦାସ | — | ନବରଙ୍ଗପୁର |
| ୯୨ | ସନୁ ମାଝୀ | — | କୁମ୍ଭୀଗଡ଼ |

ମୈଦଲପୁର ଥାନା ପକ୍ଷରୁ ଆଣତ ଷଡ଼ଯନ୍ତ୍ର ମକଦ୍ଦମାର ବିଚାର ପାଇଁ କୋରାପୁଟ ଷ୍ଟେଟ୍ କେଗ ଡେପୁଟି ମାଜିଷ୍ଟ୍ରେଟ ସୋମନାଥ ମିଶ୍ର ସ୍ୱତନ୍ତ୍ର ବିଚାରପତି ଭାବେ ନିଯୁକ୍ତ ହୋଇଥିଲେ। ନବରଙ୍ଗପୁର ତହସିଲ ଅଫିସଠାରେ ଅସ୍ଥାୟୀ କୋର୍ଟରେ ଏହି ମକଦ୍ଦମାର ଶୁଣାଣି ହୋଇଥିଲା। ଏହି ଏସ. ଆର ମକଦ୍ଦମା ନମ୍ବର ୭୦/୪୨ ରେ ପୋଲିସ ପକ୍ଷରୁ ପ୍ରାୟ ତିନି ଶହ ଜଣଙ୍କୁ ସରକାରୀ ସାକ୍ଷୀ ଦେବାକୁ ହାଜର

କରାଯାଇଥିଲା । ଶୁଣାଣୀ ସମୟରେ ୯୨ ଜଣ ଅଭିଯୁକ୍ତ କଂଗ୍ରେସ ସଂଗ୍ରାମୀଙ୍କ ନାମ ଡକା ନ ଯାଇ କେଶ ରେକର୍ଡ଼ ଅନୁଯାୟୀ ନମ୍ବର ଡକା ଯାଉଥିଲା । ପ୍ରତ୍ୟେକ ଅଭିଯୁକ୍ତ ସଂଗ୍ରାମୀଙ୍କ ହାତରେ ନମ୍ବର ଲେଖା ପଟି ବନ୍ଧା ଯାଇଥିଲା ।

ପୋଲିସ ପକ୍ଷରୁ କୋର୍ଟ ସର୍କଲ ଇନ୍‌ସପେକ୍ଟର ଜବାବ ସୁଆଲ କରିଥିଲେ । ୯୨ ଜଣ ସଂଗ୍ରାମୀଙ୍କ ପକ୍ଷରୁ ଲକ୍ଷ୍ମୀଚନ୍ଦ୍ର ଦାସ ଜବାବ ସୁଆଲ ନିକ୍ତି କରିଥିଲେ । ଯାହାଙ୍କ ସେତେବେଳର ଓକିଲଙ୍କ ଯୁକ୍ତି ତର୍କ ଠାରୁ ବଳି ପଡ଼ିଥିଲା । ଶୁଣାଣୀ ସମୟରେ କୋର୍ଟ ସି ଆଇ ମାଜିଷ୍ଟ୍ରେଟଙ୍କ ସମ୍ମୁଖରେ ଥିବା ଟେବୁଲ ଉପରେ ବସିରହି ସାକ୍ଷୀମାନଙ୍କୁ ପଚାରି ଉତ୍ତର କରୁଥିଲେ । ପୋଲିସର ସାକ୍ଷୀଙ୍କ ମଧ୍ୟରେ ଅଧିକାଂଶ ଶ୍ରେଣୀର ଉଦାସୀନ ଥିଲେ । ପୋଲିସର ଭୟରେ ସେମାନେ ସାକ୍ଷୀବନ୍ଦ ଯାଇଥିଲେ ।

ପୋଲିସ ପକ୍ଷରୁ କୋର୍ଟରେ ବହୁ ମିଥ୍ୟା ସୂତ୍ରର ଆଶ୍ରୟ ନିଆଯାଇଥିଲା । ସଂଗ୍ରାମୀମାନେ ଅଧିବେଶରେ ସଙ୍ଗଠିତ ହୋଇ ପାପଡ଼ାହାଣ୍ଡି ପୋଲିସ ଫାଣ୍ଡି ପୋଡ଼ିବାକୁ ସ୍ଥିର କରିଥିଲେ । କଂଗ୍ରେସ ଶୋଭାଯାତ୍ରାରେ ପୋଲିସକୁ ହତ୍ୟା କରିବାକୁ, ରାଜଭକ୍ତ ମାରିବାକୁ ହିଂସାପୂର୍ଣ୍ଣ ସ୍ଲୋଗାନ ଦିଆଯାଇଥିଲା । କଂଗ୍ରେସ କର୍ମୀମାନେ ବ୍ରିଟିଶ ସରକାରଙ୍କ ସାର୍ବଭୌମତ୍ୱକୁ ଅହ୍ୱାନ କରିଥିଲେ । ସେମାନେ ସରକାର ନାହିଁ, ସରକାରୀ କର୍ମଚାରୀଙ୍କୁ ଅମାନ୍ୟ କରିବାକୁ, ଟିକସ ନ ଦେବାକୁ ଲୋକଙ୍କୁ ପ୍ରବର୍ତ୍ତାଇ ଥିବା ଅଭିଯୋଗ କରି ସେଥିରୁ ଶକ୍ତିକୁ ଚୂର୍ଣ୍ଣ କରିବାକୁ ଉଦ୍ୟମ କରାଯାଇଥିଲା ।

ପ୍ରଥମ ଦିନର ଶୁଣାଣୀ ସମୟରେ କୋର୍ଟ ସି. ଆଇ ଛଉଟ ମଧ୍ୟ ପଚାରୁଥିଲେ । ପୋଲିସର ସାକ୍ଷୀମାନେ ଭୟରେ ଯାହା ପଚାରିଲେ ଖାଲି 'ହଁ' କରି ଦେଉଥିଲେ । ଅଭିଯୁକ୍ତ ସଂଗ୍ରାମୀଙ୍କ ନାମ ତାଲିକା ପାଖରେ କାଣ୍ଡ, ବର୍ଚ୍ଛା, ଟାଙ୍ଗି, ନଳୀ, ଲାଠି ପ୍ରଭୃତି ଶସ୍ତ୍ର ବର୍ଣ୍ଣିତ ହୋଇଥିଲା ।

ପୋଲିସ ପକ୍ଷରୁ ସାକ୍ଷୀ ମାନଙ୍କୁ ପ୍ରଶ୍ନ କରାଯାଉଥିଲା—"ଗୋଟିଏ ହାଟର ଲୋକ ଭଳି କଂଗ୍ରେସ କର୍ମୀମାନେ ଯାଉଥିଲେ କି ? ତାପରେ ପାଞ୍ଚ ଗାଁରୁ ଗୋଟା ତୋଟାରେ ହୋଇଥିବା କଂଗ୍ରେସ ବୈଠକେ ପାପଡ଼ାହାଣ୍ଡି ଫାଣ୍ଡି ପୋଡ଼ିବାକୁ ଏବଂ ରାଜଭକ୍ତ ପୋଲିସ ମାରିବାକୁ ଠିକ୍ କରାଯାଇଥିଲା କି ? କଂଗ୍ରେସ କର୍ମୀମାନେ ଟାଙ୍ଗି, ଟାଙ୍ଗିଆ, ଠେଙ୍ଗା, ନଳୀ ଧରି ଶୋଭାଯାତ୍ରାରେ ଯାଉଥିଲେ କି ?. ମାଡ଼କାଟ ବୋଲି ପାଟି କରି ବ୍ରିଟିଶ ସରକାର ନାହିଁ ବୋଲି ଧ୍ୱନି ଦେଉଥିଲେ କି ?" ଏ ସବୁର ଉତ୍ତର

ସାକ୍ଷୀମାନେ ଉତ୍ତରରେ ଖାଲି 'ହଁ' 'ହଁ' କରି ଦେଉଥିଲେ ।

ଲକ୍ଷ୍ମୀଚନ୍ଦ୍ର ଦାସ ପୋଲିସ ପକ୍ଷରୁ କୋର୍ଟରେ ଯେଉଁ ଭଳି ସାକ୍ଷ୍ୟ ଉପସ୍ଥାପନ କରାଯାଇ ଅନ୍ୟରୂପ ଦେବାକୁ ଚେଷ୍ଟା ହେଉଛି ତାହାକୁ ଠିକ ଭାବେ ବୁଝି ପାରିଥିଲେ । ସେ ତାଙ୍କ ଯୁକ୍ତିରେ ପୋଲିସର ଯୁକ୍ତିକୁ ଖଣ୍ଡନ କରିଥିଲେ । ଦାସ ଯୁକ୍ତି କରିଥିଲେ ଯେ, କୋରାପୁଟିଆ ଆଦିବାସୀ ଲୋକେ ବର୍ଷାଋତୁରେ ନଦୀନାଳର, ଗଭୀରତା ମାପ କରିବା ପାଇଁ ଠେଙ୍ଗା ଧରିବା ଏକ ସ୍ୱଭାବ । ଦୂର ଗାଁକୁ ଯିବା ସମୟରେ ବାଟରେ ରନ୍ଧନ ପାଇଁ କାଠ କାଟିବା ସକାଶେ ଟାଙ୍ଗୀ ଟାଙ୍ଗିଆ ସଙ୍ଗରେ ନିଅନ୍ତି । ବାଘ ଭାଲୁ ହିଂସ୍ର ଜନ୍ତୁଙ୍କ ଭୟରେ ଆଦିବାସୀ ଲୋକେ ନଳୀ ଧରି ଦୂର ସ୍ଥାନକୁ ଯାଆନ୍ତି । ଏଗୁଡିକ କୋରାପୁଟିଆ ଆଦିବାସୀଙ୍କ ନିତ୍ୟ ଦିନିଆ କଥା । ପୋଲିସ ପକ୍ଷରୁ 'ଶଳଭ ମାରକୁ' ଯେ ଭଳି 'ଶଳଭ ପୋଲିସ ମାର' ବୋଲି କୁହାଯାଉଅଛି ତାହା ମିଥ୍ୟା ଅଟେ । ଆଦିବାସୀ ଲୋକେ ଶଳଭ ଜଙ୍ଗଲ କାଟିବାକୁ ଧ୍ୱନି ଦେଉଥିଲେ । କିନ୍ତୁ ଶଳଭ ପୋଲିସ ମାରିବାକୁ ନୁହେଁ । ଘୁମ୍ପାଗୁଡା ଠାରେ ହୋଇଥିବା କଂଗ୍ରେସ ସଭାରେ ପୋଲିସ ଫାଣ୍ଡି ପୋଡିବାକୁ ସ୍ଥିର କରାଯାଇ ନଥିଲା । ଉକ୍ତ ସଭାରେ କେବଳ ଡାବୁଗାଁ ଯାଇ ସାଥୀ କଂଗ୍ରେସ କର୍ମୀମାନଙ୍କ ହଦ୍ଧ ବ୍ରତ ନେଇ କଥାବାର୍ତ୍ତା କରିବାକୁ ପ୍ରସ୍ତାବ କରାଯାଇଥିଲା । କଂଗ୍ରେସ କର୍ମୀମାନେ ଏକ ହୋଇ ତିରଙ୍ଗା ପତାକା ଧରି, ଭାରତମାତାର ଜୟଗାନ କରି ଶାନ୍ତିପୂର୍ଣ୍ଣ ଶୋଭାଯାତ୍ରାରେ ଯାଉଥିଲେ । ସ୍ୱାଧୀନତା ସଂଗ୍ରାମୀ ଦାସ ବିପ୍ଳବପନ୍ଥଙ୍କ ତାଙ୍କ ଯୁକ୍ତି ସ୍ଥଳରେ ବୁଝାଇବା ସଙ୍ଗେ ସଙ୍ଗେ ମୁଦେଇ ଓ ସାକ୍ଷୀମାନଙ୍କ ଦ୍ୱାରା ତାଙ୍କ ଯୁକ୍ତିକୁ ପ୍ରମାଣିତ କରୁଥିଲେ । ଦାସଙ୍କ ବିଦ୍ଧ ମୁଦେଇ ଓ ସାକ୍ଷୀମାନଙ୍କ ପ୍ରତ୍ୟକ୍ଷ ସମ୍ପର୍କ ଥିବାରୁ ନିର୍ଭୟରେ ସେମାନେ ଦାସଙ୍କ ଉକ୍ତିକୁ ସମର୍ଥନ କରି କହୁଥିଲେ ।

ଲକ୍ଷ୍ମୀଚନ୍ଦ୍ର ଦାସଙ୍କ ଯୁକ୍ତି ତର୍କରେ ମକଦ୍ଦମାଟି ଦୁର୍ବଳ ହୋଇ ପଡ଼ୁଥିବାରୁ ପୋଲିସ ସି. ଆଇ. ତାଙ୍କୁ କ୍ରସ ଏକଜାମିନେସନ କରିପାରିବେ ନାହିଁ ବୋଲି ମାଜିଷ୍ଟ୍ରେଟଙ୍କ ଠାରେ ଆପତ୍ତି ଉଠାଇଥିଲେ । ପୋଲିସ ଲୋକଙ୍କୁ ଶୁଣାଣୀ ସମୟରେ ଲକ୍ଷ୍ମୀଚନ୍ଦ୍ର ଦାସ ଯୁକ୍ତିସ୍ଥଳରେ ସମାଲୋଚନା କରୁଥିବାରୁ ସେମାନେ ଅଧିକ ଉତ୍ତେଜିତ ହୋଇ ନାନା ବିଭ୍ରାନ୍ତି ସୃଷ୍ଟି କରିବାକୁ ଖୋଜୁଥିଲେ । ଦାସ ଜଣେ ମୁଦେଇ ହୋଇଥିବାରୁ ତାଙ୍କର ଜେରା କରିବାର ଅଧିକାର ରହିଛି ବୋଲି ଦୃଢ଼ ସ୍ୱରରେ କହିବାରୁ ତାହାକୁ ମାଜିଷ୍ଟ୍ରେଟ ଗ୍ରହଣ କରିଥିଲେ ।

ଏହି ମକଦ୍ଦମାର ଶୁଣାଣୀ ସମୟରେ ଟାଙ୍ଗୀମାଡ ଖାଇଥିବା ସିପାହୀ ମୁଡ୍ୟାଲୁର ସାକ୍ଷ୍ୟ ପ୍ରଦାନ କୌତୁହଳ ସୃଷ୍ଟି କରିଥିଲା । ଲକ୍ଷ୍ମୀଚନ୍ଦ୍ର ଦାସ ଯେତେବେଳେ

ତାଙ୍କୁ ପଗ୍ଭରିଲେ—ତୁମକୁ କେମିତି ଠାଙ୍ଗୀମାଡ ହେଲ ? ସିପାହୀ ଜଣକେ କହିଲେ—କଂଗ୍ରେସ କର୍ମୀମାନେ ଠାଙ୍ଗୀ, ଠେଙ୍ଗା ଧରି ଆମକୁ ଆକ୍ରମଣ କରିଥିଲେ । ମୋ ସମ୍ମୁଖରେ ଥିବା ଜଣେ କଂଗ୍ରେସ କର୍ମୀ ମୋତେ ଠାଙ୍ଗୀରେ ମାରିଲା । ଉକ୍ତ ସିପାହୀର କାନ ପଛପଟେ ଠାଙ୍ଗୀମାଡ ହୋଇଥିଲା । ତାଙ୍କୁ ଯେତେବେଳେ ଲକ୍ଷ୍ମୀଚନ୍ଦ୍ର ଦାସ ପଗ୍ଭରିଲେ—ତୁମ ସମ୍ମୁଖରେ ମାଡ ମାରିଲେ ତ କାନ ପଛପଟେ କେମିତି ବାଜିଲା । ତତ୍‌କ୍ଷଣାତ ମୁର୍ଚ୍ଛାଲୁ ସିପାହୀ ଜଣକ କୋର୍ଟରେ ଅଚେତା ହୋଇ ତଳେ ପଡ଼ିଯାଇଥିଲା । କୋର୍ଟ ସି. ଆଇ. ଏହାର ସୁଯୋଗ ନେଇ ଠାଙ୍ଗୀ ମାଡ ହେତୁ ସିପାହୀ ଅଚେତା ହୋଇ ପଡ଼ିଗଲେ ବୋଲି କହିବା ବେଳେ ଲକ୍ଷ୍ମୀଚନ୍ଦ୍ର ଦାସ ସିପାହୀ ଜଣକ ମିଥ୍ୟା କହିଥିବାରୁ ଅଚେତା ହୋଇପଡ଼ିଲେ ବୋଲି ମାଜିଷ୍ଟ୍ରେଟଙ୍କ ଠାରେ ଯୁକ୍ତି ଉପସ୍ଥାନ କରିଥିଲେ ।

ସୁବେଦାର ଗୌଡ ତାଙ୍କ ଜବାବରେ ଆକ୍ରମଣ ଯୋଗୁଁ ନିଜର ଆତ୍ମରକ୍ଷା ପାଇଁ ପୋଲିସ ଗୁଳି ଚଳାଇଥିଲେ ବୋଲି କହିଥିଲେ ।

ଲକ୍ଷ୍ମୀଚନ୍ଦ୍ର ଦାସ ସାକ୍ଷ୍ୟ ଗ୍ରହଣ ପରେ ତାଙ୍କ ଶେଷ ଯୁକ୍ତିରେ କୋର୍ଟକୁ କହିଥିଲେ ଯେ କଂଗ୍ରେସ କର୍ମୀମାନେ ମହାତ୍ମା ଗାନ୍ଧୀଙ୍କୁ ଜୟ, ଭାରତମାତାକୁ ଜୟ, ବୋଲି ଏକ ଶାନ୍ତିପୂର୍ଣ୍ଣ ଶୋଭାଯାତ୍ରା ବାହାର କରି ତାବୁଗାଁ ଅଭିମୁଖେ ଯାଉଥିଲେ । ରିଜର୍ଭ ଜଙ୍ଗଲ ମାରିବାକୁ କହୁଥିଲେ । ଦୂର ଗାଁକୁ ଯିବା ସମୟରେ ଆଦିବାସୀଙ୍କ ଜନ୍ମାଗତ ଅଭ୍ୟାସ ଥିବା ଯୋଗୁଁ ସେମାନେ ଠାଙ୍ଗୀ, ଠେଙ୍ଗା, ନଳୀ ପ୍ରଭୃତି ଧରିଥିଲେ । ସେମାନଙ୍କ କୌଣସି ପ୍ରକାର ଥାନା ପୋଡ଼ିବା ଓ ପୋଲିସ ହାଣିବା ଉଦ୍ଦେଶ୍ୟ ନଥିଲା । ଥାନା ପୋଡ଼ିବାକୁ ଥିଲେ ସେମାନେ ତ ପାପଡ଼ାହାଣ୍ଡି ସଦରପଟେ ଯାଇଥାଆନ୍ତେ । କିନ୍ତୁ କଂଗ୍ରେସ ଶୋଭାଯାତ୍ରା ତାବୁଗାଁ ରାସ୍ତାରେ ଗଲା କାହିଁକି ? ଲକ୍ଷ୍ମୀଚନ୍ଦ୍ର ଦାସ ବ୍ରିଟିଶ ପୋଲିସ ନିରୀହ କଂଗ୍ରେସ କର୍ମୀମାନଙ୍କୁ ବିନା କାରଣରେ ଗୁଳି କରି କପରି ମିଥ୍ୟା ଅଭିଯୋଗ କରିଛନ୍ତି ତାହା ଉପସ୍ଥାପନ କରିବାକୁ ଯାଇ କୋର୍ଟକୁ କହିଥିଲେ ଯେ, ପାଣି ଓ ପୋଲିସର ଘେରି ମଧ୍ୟରେ ସଂଗ୍ରାମୀମାନେ ଗୁପି ହୋଇଯିବାରୁ ଠେଙ୍ଗା, ଠାଙ୍ଗୀ ପ୍ରଭୃତି ହାତଟେକି ଉପରକୁ ଉଠାଇଥିଲେ । ପୋଲିସ ବାହିନୀକୁ ଆକ୍ରମଣ କରିବାକୁ ନୁହେଁ । ବିନା କାରଣରେ ପୋଲିସ ସେମାନଙ୍କୁ ନିର୍ମମ ଭାବେ ଗୁଳି କରିଥିଲେ ।

ସାକ୍ଷ୍ୟ ବିଗ୍ଭରଣା ପରେ ବିଗ୍ଭରପତି ସୋମନାଥ ମିଶ୍ର ଏହି ଷଡଯନ୍ତ୍ର ମକଦ୍ଦମାର ମୁଖ୍ୟ ମୁଦ୍ଦେଇ ଭାବେ ଅଭିଯୁକ୍ତ ହୋଇଥିବା ଲକ୍ଷ୍ମୀଚନ୍ଦ୍ର ଦାସ ଓ ମାଧବ ପ୍ରଧାନଙ୍କୁ ସଙ୍ଗରେ ନେଇ ପାପଡ଼ାହାଣ୍ଡି ଗୁଳିକାଣ୍ଡ ଘଟଣାସ୍ଥଳୀ ପରିଦର୍ଶନ କରିଥିଲେ । ଘଟଣାସ୍ଥଳରେ ଲକ୍ଷ୍ମୀଚନ୍ଦ୍ର ଦାସ ବିଗ୍ଭରପତିଙ୍କୁ ସମସ୍ତ ବିଷୟ ବୁଝାଇଥିଲେ । ଏହି

ସମୟରେ ପୋଲିସ ସି. ଅଇ ଦାସଙ୍କୁ କହିଥିଲେ--ଅପଣଙ୍କୁ ଏହି ମକଦ୍ଦମାରେ ଅନ୍ତର୍ଭୁକ୍ତ କରି ବ୍ରିଟିଶ ସରକାରଙ୍କୁ ବହୁତ ଟଙ୍କା ସହିବାକୁ ପଡ଼ୁଛି । ମକଦ୍ଦମାର ସମସ୍ତ ଶୁଣାଣୀ ଶେଷ ହୋଇଯିବା ପରେ ଲକ୍ଷ୍ମୀଚନ୍ଦ୍ର ଦାସଙ୍କୁ ପୂର୍ବରୁ ଅନ୍ୟାନ୍ୟ ମକଦ୍ଦମାର ଦଣ୍ଡାଦେଶ ଭୋଗ କରିବାକୁ କୋରାପୁଟ ଜିଲ୍ଲା ଜେଲକୁ ପ୍ରେରଣ କରାଯାଇଥିଲା ।

୨-୨-୧୯୪୩ ରେ ଏହି ମକଦ୍ଦମାର ରାୟ ପ୍ରକାଶ ପାଇଥିଲା । ବିଚାରପତି ସୋମନାଥ ମିଶ୍ର ୯୧ ନମ୍ବର ମୁଦ୍ଦେଇ ଲକ୍ଷ୍ମୀଚନ୍ଦ୍ର ଦାସଙ୍କୁ ଆବଶ୍ୟକ ପ୍ରତ୍ୟକ୍ଷ ପ୍ରମାଣ ଅଭାବରୁ ଦଣ୍ଡାଦେଶ ଦେଇ ପାରି ନଥିଲା । ୪୭ ନମ୍ବର ମୁଦ୍ଦେଇ ମାଧବ ପ୍ରଧାନଙ୍କୁ ଛଅବର୍ଷ ସଶ୍ରମ କାରାଦଣ୍ଡ ଆଦେଶ ହୋଇଥିଲା । ୬୭ ରୁ ୭୧ ନମ୍ବର ଅଭିଯୁକ୍ତ ମୁଦ୍ଦେଇଙ୍କୁ ଭାରତୀୟ ଦଣ୍ଡବିଧି ଆଇନର ୧୧୭ ଧାରା ଅନୁଯାୟୀ ଛ'ମାସ ଏବଂ ୭୬ ରୁ ୮୩ ନମ୍ବର ମୁଦ୍ଦେଇଙ୍କୁ ନ'ମାସ କାରାଦଣ୍ଡ ଶୁଣାଇ ଥିଲେ । ୨୭, ୩୦, ୭୫, ୭୫ ଓ ୯୨ ନମ୍ବର ମୁଦ୍ଦେଇଙ୍କୁ ନିର୍ଦ୍ଦୋଷରେ ଖୋଲାସ କରିଥିଲେ ।

ଢେଙ୍କାନାଳଖଣ୍ଡି ଥାନାର ପାଇପୁଟ ଗ୍ରାମନିବାସୀ ମହାଦେବ ଅମନାତ୍ୟଙ୍କୁ ପୋଲିସ ପକ୍ଷରୁ କଂଗ୍ରେସ ସଂଗ୍ରାମୀଙ୍କ ବିରୁଦ୍ଧରେ ସାକ୍ଷୀ ହେବାକୁ ପୋଲିସ ପକ୍ଷରୁ ଭୟ ପ୍ରଦର୍ଶନ କରାଯାଇଥିଲା । କିନ୍ତୁ କଂଗ୍ରେସ ବିରୁଦ୍ଧରେ ସାକ୍ଷୀ ଦେବାକୁ ମନା କରି ସେ ଆତ୍ମହତ୍ୟା କରିଥିଲେ । କଂଗ୍ରେସ କର୍ମୀ ନିଜ ଜୀବନ ଅପେକ୍ଷା ସ୍ୱରାଜକୁ ଉଚ୍ଚସ୍ଥାନ ଦେଇଥିଲା । ନିଜ ଜୀବନ ଦେଲା, କିନ୍ତୁ କଂଗ୍ରେସର ବିରୋଧରେ କଥାପଦେ ମଧ୍ୟ କହି ନଥିଲା ।

ଜଗନ୍ନାଥପୁରର ପୀତବାସ ପାଣି ପାପଡାହାଣ୍ଡି ଗୁଳିକାଣ୍ଡ ସମୟରେ କଂଗ୍ରେସ ମେଳରେ ଉପସ୍ଥିତ ଥିଲେ । ଗୁଳିକାଣ୍ଡ ଘଟିବା ପରେ ତାଙ୍କର ପତ୍ତା ମିଳି ନଥିଲା । ସେ କିପରି ଭାବେ ମୃତ୍ୟୁ ବରଣ କରିଛନ୍ତି ତାହା ଆଜି ପର୍ଯ୍ୟନ୍ତ ଜଣାପଡ଼ିନାହିଁ ।



ଗୁଣୁପୁର, ରାୟଗଡ଼ ବିଷମକଟକ, ନାରାୟଣପାଟଣା ପ୍ରଭୃତି କୋରାପୁଟ ଲଏର (ତଳ) ଡିଭିଜନ ଅନ୍ତର୍ଗତ ଥିଲା । କଂଗ୍ରେସ କାମ ପ୍ରାରମ୍ଭରେ ଏହି ଅଞ୍ଚଳ ସହ ରାଧାକୃଷ୍ଣ ବିଶ୍ୱାସରାୟଙ୍କ ହିଁ ସମ୍ପର୍କ ଥିଲା । ଏହି ଲଏର ଡ଼ିଭିଜନରେ ଗୁଣୁପୁର ହିଁ କଂଗ୍ରେସ କାମର ମୁଖ୍ୟ କେନ୍ଦ୍ରସ୍ଥଳୀ । ପ୍ରଥମେ ପ୍ରଥମେ ବିଶ୍ୱାସରାୟ କଂଗ୍ରେସ ପ୍ରଚାରରେ ଗୁଣୁପୁର ଗସ୍ତ କରୁଥିବା ସମୟରେ କାନ୍ତାରାଓ ବେହେରା ତାଙ୍କୁ କଂଗ୍ରେସ କାମରେ ସାହାଯ୍ୟ ଓ ସହଯୋଗ କରୁଥିଲେ । ସେ ସରକାରୀ ଚାକିରୀରେ ଚାଲିଯିବା ପରେ ପ୍ରହ୍ଲାଦ ପାଣିଗ୍ରାହୀ ସେହି ଅଞ୍ଚଳର କଂଗ୍ରେସ କାମର ନେତୃତ୍ୱ ନେଇଥିଲେ ।

୧୯୩୮ ମସିହାରେ ଲଏର ଡ଼ିଭିଜନ ପାଇଁ ଗୁଣୁପୁର କଂଗ୍ରେସ କମିଟି ଗଠିତ ହୋଇଥିଲା । ପ୍ରହ୍ଲାଦ ପାଣିଗ୍ରାହୀ ଏହାର ସଭାପତି ଓ ଭାଗୀରଥି ରଥ ଶର୍ମା ସମ୍ପାଦକ ହୋଇଥିଲେ । ଗୁଡ଼ାରୀ, ବିଷମକଟକ ଓ ରାୟଗଡ଼ ଅଞ୍ଚଳରେ ମଧ୍ୟ ଅପ୍ରକାଶିତ ଭାବେ ଅଳ୍ପ କେତେଜଣ କଂଗ୍ରେସ ସହଯୋଗୀ ଥାଆନ୍ତି । ସେମାନଙ୍କ ମଧ୍ୟରେ ରାୟଗଡ଼ର ଅଗାଧୁ ମିଶ୍ର, ବିଷମକଟକର ଅଗାଧୁ ସାହୁ, ଗୁଡ଼ାରୀର କୃଷ୍ଣଚନ୍ଦ୍ର ମହାପାତ୍ର ଅନ୍ୟତମ ।

୧୯୩୮ ମସିହାରେ ନୂଆପୁଟ ଠାରେ ରାଧାକୃଷ୍ଣ ବିଶ୍ୱାସରାୟଙ୍କ କଂଗ୍ରେସ କର୍ମୀ ତାଲିମଶିବିର ପୂଜ୍ୟ ଗୋପବନ୍ଧୁ ଚୌଧୁରୀଙ୍କ ଦ୍ୱାରା ଉଦ୍‌ଘାଟିତ ହେଲା । ଗୁଣୁପୁର ଓ ରାୟଗଡ଼ା ଅଞ୍ଚଳର କାମ କରିବା ପାଇଁ ଗୋପବନ୍ଧୁ ଚୌଧୁରୀ, ବିଶ୍ୱନାଥ ପଟ୍ଟନାୟକଙ୍କୁ ପ୍ରେରଣ କଲେ । ସେତେବେଳେ ବାଣୀ ସତ୍ୟାଗ୍ରହ ଚାଲିଥାଏ । ଗାନ୍ଧୀଜୀ ରଚନାତ୍ମକ କର୍ମୀମାନଙ୍କୁ ସତ୍ୟାଗ୍ରହରେ ଯୋଗ ଦେବାକୁ ବାରଣ କରିଥାନ୍ତି । କିନ୍ତୁ ରଚନାତ୍ମକ କର୍ମୀମାନେ ସତ୍ୟାଗ୍ରହରେ ଯୋଗ ନଦେଲେ ମଧ୍ୟ ସେମାନଙ୍କ କାର୍ଯ୍ୟ ସ୍ୱରାଜ ଆନ୍ଦୋଳନର ପରିପୂରକ ହୋଇ ତାହାର ସହାୟକ ହୋଇଥିଲା । ଗୁଣୁପୁର ଅଞ୍ଚଳରେ ସେହି କାମଟି ସୂତାକଟା କପାଚାଷରୁ ଆରମ୍ଭ ହୋଇଥିଲା । ଗୁଣୁପୁର ଠାରୁ ଅନତି ଦୂରରେ ଅବସ୍ଥିତ କୁଜେନ୍ଦ୍ରୀ ଗ୍ରାମରେ ବିଶ୍ୱନାଥ ପଟ୍ଟନାୟକ ଏକ ଆଶ୍ରମ ପ୍ରତିଷ୍ଠା କରିଥିଲେ । ସେଠାରେ ସେ ଅଞ୍ଚଳର ବହୁ ଲୋକ ସୂତାକଟା ତାଲିମ ନେବା ସଙ୍ଗେ

ସଙ୍ଗେ ଦେଶ କାମ କରିବା ପାଇଁ ଅନୁପ୍ରେରଣା ପାଇଥିଲେ । ବିଶ୍ୱନାଥ ପଟ୍ଟନାୟକଙ୍କ କାର୍ଯ୍ୟ ସେ ଅଞ୍ଚଳର ବହୁ ଲୋକଙ୍କୁ ପ୍ରଭାବିତ କରିଥିଲା । ଲୋକଙ୍କ ମନରେ ସାହସ ଆଣିଥିଲା । ଲୋକେ ଅନ୍ୟାୟ, ଅତ୍ୟାଚାର ବିରୋଧରେ ଦୃଢ଼ ଆନ୍ଦୋଳନ କରିବାକୁ ବାହାରି ପଡ଼ିଲେ । ସେ ସମୟରେ ପ୍ରଚଳିତ ଥିବା ଅମାନୁଷିକ ପ୍ରଥାର ବିରୋଧରେ କୁଜେନ୍ଦ୍ରୀ ଆଶ୍ରମ ଲୋକଙ୍କୁ ସଙ୍ଗଠିତ କରି ଠିଆ କରାଇ ପାରିଥିଲା । ବିଶ୍ୱନାଥ ପଟ୍ଟନାୟକଙ୍କ କାର୍ଯ୍ୟ ସାଧାରଣ ଲୋକଙ୍କ ମନରେ କଂଗ୍ରେସ ପ୍ରତି ଆଗ୍ରହ ସୃଷ୍ଟି କରିଥିଲା । କ୍ରମେ ବିଶ୍ୱନାଥ ପଟ୍ଟନାୟକ ଗୁଣୁପୁର, ରାୟଗଡ଼ ଅଞ୍ଚଳର କଂଗ୍ରେସର କର୍ଣ୍ଣଧାର ଭାବେ ଲୋକଙ୍କ ଦ୍ୱାରା ସହାୟ୍ୟ ସହଯୋଗ ପାଇଲେ ।

ବ୍ୟକ୍ତିଗତ ସତ୍ୟାଗ୍ରହ ସମୟରେ ପ୍ରହ୍ଲାଦ ପାଣିଗ୍ରାହୀ ଓ ଭଗବାନ ସେନାପତି ସତ୍ୟାଗ୍ରହ କରି ଗିରଫ ହୋଇଥିଲେ ।

ସ୍ୱରାଜ ସଂଗ୍ରାମର ନେଇ ବିଶ୍ୱାସରାୟ ବିଶ୍ୱନାଥ ପଟ୍ଟନାୟକଙ୍କୁ ଗୁପ୍ତପତ୍ର ଲେଖିଥିଲେ । ଅଗଷ୍ଟ ୯୬ ତାରିଖ ୧୯୪୨ ରେ ପତ୍ର ହସ୍ତଗତ ହେବାପରେ ୧୩ ତାରିଖରେ ବିଶ୍ୱନାଥ ପଟ୍ଟନାୟକ କାର୍ବନ ପେପର ପକାଇ ପ୍ରଚୁର ପତ୍ର ତିଆରି କଲେ । ତାଙ୍କ ସହ ଅନ୍ୟ କଂଗ୍ରେସ କର୍ମୀମାନେ ମଧ୍ୟ ପ୍ରଚୁରପତ୍ର ଲେଖି ପ୍ରସ୍ତୁତ କଲେ । କୁଜେନ୍ଦ୍ରୀ ଠାରେ ବୈଠକ ବସି ସଂଗ୍ରାମ ନେଇ ଆଲୋଚନା କରାଗଲା । ଆଗରୁ ତ ସମସ୍ତେ ଏଥିପାଇଁ ପ୍ରସ୍ତୁତ ହୋଇ ରହିଥିଲେ । ସମସ୍ତେ ଜେଲ ଯିବାକୁ ତିଆର ହୋଇଗଲେ । ବିଭିନ୍ନ ଅଞ୍ଚଳରେ କଂଗ୍ରେସ ବାର୍ତ୍ତା ପହଞ୍ଚାଇ ଦିଆଗଲା ।

କୁଜେନ୍ଦ୍ରୀ ଗ୍ରାମର ବାସୁର ଗମାଙ୍ଗ ଜଣେ ଜଣା ଶୁଣା ଲୋକ । କଂଗ୍ରେସ କାର୍ଯ୍ୟରେ ସେ ସକ୍ରିୟ ଥିଲେ । ତାଙ୍କର ନେତୃତ୍ୱରେ ପ୍ରାୟ ୫ ଶହ ଜଣ କଂଗ୍ରେସ ସ୍ତ୍ରୀ ପୁରୁଷ ଏକ ଶୋଭାଯାତ୍ରାରେ ବାହାରି ଗୁଣୁପୁର ଅଭିମୁଖେ ଯାତ୍ରା କଲେ । ଗୁଣୁପୁରର ସରକାରୀ ଅଫିସ ଘେରାଉ କରିବାକୁ ଯୋଜନା କରାଯାଇଥିଲା । ଏହି ଶୋଭାଯାତ୍ରାରେ ବିଶ୍ୱନାଥ ପଟ୍ଟନାୟକ ସମେତ ୫୦ ଜଣ ମହିଳା ଯୋଗ ଦେଇଥାନ୍ତି । ବର୍ଷା ଦିନ ହୋଇଥିବାରୁ ବହୁ କଷ୍ଟରେ କଂଗ୍ରେସ କର୍ମୀମାନେ ଡଙ୍ଗାରେ ବଂଶଧାରା ନଦୀ ପାରହୋଇ ଗୁଣୁପୁରରେ ପହଞ୍ଚି ଥିଲେ । ତହସିଲ ଅଫିସ ସମ୍ମୁଖରେ ଶୋଭାଯାତ୍ରା ପହଞ୍ଚି ଭାରତ ଛାଡ଼ ଚିତ୍କାର କଲା । କଂଗ୍ରେସ କର୍ମୀମାନଙ୍କୁ ଗିରଫ କରି ଥାନାରେ ଅଟକ ରଖାଗଲା ।

ତାପରଦିନ ସମସ୍ତ ସଂଗ୍ରାମୀଙ୍କୁ ଛାଡ଼ି ଦିଆଯାଇଥିଲା । ଶହ ଶହ ସଂଗ୍ରାମୀଙ୍କୁ ଭୋଜନର ବ୍ୟବସ୍ଥା କରିବା ଏକ ସମସ୍ୟା ସୃଷ୍ଟି କରିଥିଲା । ଗାଁର

କେତେକ ଲୋକ ସଂଗ୍ରାମୀଙ୍କୁ ଭୋଜନ ବ୍ୟବସ୍ଥା କରି ଦେଇଥିଲେ । ତାପରେ ଦିନ କଂଗ୍ରେସର ଶୋଭାଯାତ୍ରାରେ ଅଧିକ ସଂଖ୍ୟକ ଲୋକ ଯୋଗ ଦେଇଥିଲେ । ଗୁଣୁପୁର ହାଇସ୍କୁଲରେ ଅଧ୍ୟୟନ କରୁଥିବା କୃଷ୍ଣଚନ୍ଦ୍ର ବକ୍ସିପାତ୍ର କେତେକ ଛାତ୍ରଙ୍କ ସହ ଶୋଭାଯାତ୍ରାରେ ଯୋଗ ଦେଇଥିଲେ । କେତେକ ଛାତ୍ର ସ୍କୁଲର ରେକର୍ଡ଼ପତ୍ରକୁ ନିଆ ଲଗାଇ ପୋଡ଼ିଦେଲେ ।

ଗାଁ ଗଣ୍ଡାରେ ଶୋଭାଯାତ୍ରା ବାହାର କରି ସ୍ୱରାଜ ସଂଗ୍ରାମର ସ୍ଲୋଗାନ ଦିଆଗଲା । ଲୋକଙ୍କୁ ବ୍ରିଟିଶ ରାଜତ୍ୱକୁ ହଟାଇବା ପାଇଁ ଆହ୍ୱାନ କରାଗଲା । କେତେକେ କଂଗ୍ରେସ ସଂଗ୍ରାମୀମାନଙ୍କୁ ଖାଇବାକୁ ଦେଲେ ବ୍ରିଟିଶର କୋପ ଦୃଷ୍ଟିରେ ପଡ଼ିବେ ବୋଲି ସଂଗ୍ରାମୀଙ୍କୁ ଖାଇବାକୁ ଦେଲେନାହିଁ । ପୋଲିସ ପକ୍ଷରୁ ବିଭିନ୍ନ ସ୍ଥାନରୁ କଂଗ୍ରେସ କର୍ମୀମାନଙ୍କୁ ଗିରଫ କରି ନିଆଗଲା ।

ଅଗଷ୍ଟ ୧୫ ତାରିଖରେ ବିଶ୍ୱନାଥ ପଟ୍ଟନାୟକଙ୍କୁ ଗିରଫ କରାଗଲା । ପରେ ପରେ ପ୍ରହ୍ଲାଦ ପାଣିଗ୍ରାହୀ, ଭଗବାନ ସେନାପତି ପ୍ରମୁଖ ଗିରଫ ହୋଇଗଲେ । କେବଳ କୁଜେନ୍ଦ୍ରୀ ଗ୍ରାମରୁ ୨୧ ଜଣ ସ୍ତ୍ରୀ ଓ ୩୫ ଜଣ ପୁରୁଷ କଂଗ୍ରେସ କର୍ମୀ ଓ ସମର୍ଥକଙ୍କୁ ଗିରଫ କରି ନିଆଗଲା । ସମସ୍ତଙ୍କୁ ଦଣ୍ଡାଦେଶ ଶୁଣାଇ ଦିଆଯାଇଥିଲା

ପ୍ରହ୍ଲାଦ ପାଣିଗ୍ରାହୀ, ଭଗବାନ ସେନାପତି, ଦେବତା ସୂର୍ଯ୍ୟନାରାୟଣ, କାଳୀଚରଣ ପଟ୍ଟନାୟକ, ନୀଳକଣ୍ଠ ରମାଙ୍କ ପ୍ରମୁଖଙ୍କୁ ଦୀର୍ଘଦିନ କାରାଦଣ୍ଡ ହୋଇଥିଲା । ବିଶ୍ୱନାଥ ପଟ୍ଟନାୟକଙ୍କୁ ପ୍ରଥମେ ୬ ମାସ ସଜା ହୋଇଥିଲା । ସେ ଖୋଲାସ ହେବା ପରେ ପୁଣି ଆନ୍ଦୋଳନ କରି ଏକ ବର୍ଷ କାରାଦଣ୍ଡ ଭୋଗ କରିଥିଲେ । କୁଜେନ୍ଦ୍ରୀର ବାସୁର ରମାଙ୍କ ପରିବାର ସ୍ୱରାଜ ସଂଗ୍ରାମରେ ଯେଉଁ କାର୍ଯ୍ୟ କରିଛନ୍ତି ତାହା ଚିରଦିନ ପାଇଁ ସ୍ମରଣୀୟ ହୋଇ ରହିବ । ତାଙ୍କର ସ୍ତ୍ରୀ ଶାନ୍ତି କଂଗ୍ରେସ ସଙ୍ଗଠନ ପାଇଁ ବହୁତ କାର୍ଯ୍ୟ କରିଛନ୍ତି । ଆନ୍ଦୋଳନ କରି ବାସୁର ରମାଙ୍କ ପରିବାରର ସମସ୍ତେ କାରାବରଣ କରିଛନ୍ତି । ରାଧାମୋହନ ସାହୁ ଆନ୍ଦୋଳନ ସମୟରେ ଗୁଣୁପୁର ଅଞ୍ଚଳ ଲୋକଙ୍କ ଅତି ଆଦରର ବନ୍ଧୁ ହୋଇଥିଲେ । ସେ ଅଞ୍ଚଳ ସହ ତାଙ୍କର ଅତୁଟ ସମ୍ପର୍କ ବରାବର ରହିଥିଲା ।

୧୯୪୩ ସାଲରେ ଗୁଣୁପୁର କଂଗ୍ରେସ କମିଟି ସମ୍ପର୍କରେ କୋରାପୁଟ ଜିଲ୍ଲା ପୋଲିସ ଗୁପ୍ତ ଫୌଜଦାରୀ ପୁସ୍ତିକାରେ ଲେଖାଯାଇଛି—Prahallad

Panigrahi offered Satyagraha in 1941. Biswanath Patnaik is at Kujindri Ashram. He is a Dangerous' worker. He is now in jail. He had a workers training camp at Kujindri and intending to organise a Shanti-Sena batch at Kujindri. In the Civil Disobedience movement he cuas a moving spirit in Gunpur circle.



କୋରାପୁଟ ଏଜ୍ଲିର ସଦରମହକୁମା ହୋଇଥିଲେ ମଧ୍ୟ ଏଠାରେ ସ୍ୱରାଜ ସଂଗ୍ରାମ ଅବଧିରେ କୌଣସି ଉଲ୍ଲେଖନୀୟ କାର୍ଯ୍ୟ ହୋଇ ନଥିଲା । କିନ୍ତୁ କୋରାପୁଟ ସବ୍‌ଡିଭିଜନର ପଟାଙ୍ଗୀ ସେମିଳିଗୁଡ଼ା, ପାଡ଼ୁଆ, ନନ୍ଦପୁର, ଦଶମନ୍ତପୁର, ସୁନାବେଡ଼ା ପ୍ରଭୃତି ଗ୍ରାମାଞ୍ଚଳରେ କଂଗ୍ରେସ କର୍ମୀମାନେ ସ୍ୱରାଜ ଆନ୍ଦୋଳନରେ ସକ୍ରିୟ ଭୂମିକା ଗ୍ରହଣ କରିଥିଲେ ଏବଂ ସେମାନଙ୍କ ଦ୍ୱାରା ଉଲ୍ଲେଖନୀୟ କାର୍ଯ୍ୟ ସଙ୍ଗଠିତ ହୋଇଥିଲା । କୋରାପୁଟ ସବ୍‌ଡିଭିଜନର ବିଭିନ୍ନ ସ୍ଥାନରେ ଟେଲିଫୋନ ତାରକଟା, ବ୍ରିଜ ଧ୍ୱଂସ, ବିକ୍ଷୋଭ ପ୍ରଭୃତି ଆନ୍ଦୋଳନମୂଳକ କାର୍ଯ୍ୟ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲା ।

୧୯୩୮ ମସିହାରେ ପାଡୁଆ, ନନ୍ଦପୁର ଅଞ୍ଚଳ ପାଇଁ ରେନଡାଙ୍ଗା ପ୍ରାଥମିକ କଂଗ୍ରେସ କମିଟି ମଧୁସୂଦନ ସେଠୀଙ୍କ ସଭାପତିତ୍ୱରେ ଗଠିତହୋଇଥିଲା । କିନ୍ତୁ ଏହାର ସମସ୍ତ କାର୍ଯ୍ୟ ଜିଲ୍ଲା କଂଗ୍ରେସ କମିଟିର ପ୍ରତ୍ୟକ୍ଷ ନିୟମାଧୀନ ଥିଲା । ୧୯୪୨ ଅଗଷ୍ଟ ମାସର ଆନ୍ଦୋଳନ ସମ୍ବନ୍ଧରେ କୋରାପୁଟ ଜିଲ୍ଲାର ପୋଲିସ ସୁପରିଣ୍ଟେଣ୍ଡେଣ୍ଟ ଏଫ. ଏଫ: ପି. ଗିଲ୍ ଲମ୍ଟାପୁଟ ଠାରେ ଥିବା ଡାକ ବଙ୍ଗଳାରେ ରହି ସେହି ଅଞ୍ଚଳର ଆନ୍ଦୋଳନକୁ ଦବାଇବା ପରିକଳ୍ପନା କରୁଥାନ୍ତି । ସେ ସଶସ୍ତ୍ର ପୋଲିସ ବାହିନୀକୁ ଗ୍ରାମାଞ୍ଚଳକୁ ପଠାଇ କଂଗ୍ରେସ କର୍ମୀ, କଂଗ୍ରେସ ସମର୍ଥକ ଓ ଖଦଡଧାରୀଙ୍କୁ ଖୋଜି ବାନ୍ଧି ଆଣିବାକୁ ନିର୍ଦ୍ଦେଶ ଦେଲେ । ସେହି ଅନୁସାରେ ବ୍ରିଟିଶ ପୋଲିସ ଗାଁ ଗାଁ ଯାଇ କଂଗ୍ରେସ ଲୋକଙ୍କୁ ଅକଥନୀୟ ଅତ୍ୟାଚାର କରି ଲମଟାପୁଟ ଡାକ ବଙ୍ଗଳାକୁ ଟାଣିଆଣି ଥିଲେ । ଏଭଳି ଶହ ଶହ କଂଗ୍ରେସ କର୍ମୀ ସମର୍ଥକମାନଙ୍କୁ ଆଣି ଏସ୍ ପି ଙ୍କ ସମ୍ମୁଖରେ ପହଞ୍ଚାଇ ଦିଆଯାଇଥିଲା ।

ଡାକ ବଙ୍ଗଳାରେ ଏସ. ପି. କଂଗ୍ରେସ କର୍ମୀମାନଙ୍କ ବିରୁଦ୍ଧରେ କିପରି ବର୍ବରୋଚିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲେ ତାହା ଦେଖିବାର କଥା ।

ଡାକ ବଙ୍ଗଳା ସମ୍ମୁଖ ଓ ପଛପଟେ ଦୁଇଗୋଟି ଦ୍ୱାର ଥିଲା । ସମ୍ମୁଖ ଦ୍ୱାରରେ ୪ ଜଣ ଓ ପଛ ଦ୍ୱାରରେ ଦୁଇଜଣ ଲମ୍ବା ଲଠିଧାରୀ ପୋଲିସ ଦଣ୍ଡାୟମାନ ହୋଇଥିଲେ । ଶହ ଶହ କଂଗ୍ରେସ ଲୋକଙ୍କୁ ଡାକ ବଙ୍ଗଳାକୁ ଅଣାଯାଇ ଜଣ ଜଣ କରି ସମସ୍ତଙ୍କୁ ବିବସ୍ତ୍ର କରାଗଲା । ଏହି ବସ୍ତ୍ର ହରଣ ସମୟରେ ତାଙ୍କ ମୁଣ୍ଡଠାରୁ ଆରମ୍ଭ କରି ଗୋଡ ପର୍ଯ୍ୟନ୍ତ ବେତ ମାଡ଼ ଦିଆଯାଇଥିଲା । ଖଦଡ଼ କପଡ଼ା ଗୁଡ଼ିକୁ ଗୋଟିଏ ସ୍ଥାନରେ ପୋଡ଼ିବା ପାଇଁ ଠୁଳ କରାଯାଇଥିଲା । ପ୍ରାଙ୍ଗଣରେ ଦଳେ ସିପାହୀ ସଂଗ୍ରାମୀମାନଙ୍କୁ ଅମାନୁଷିକ ଭାବେ ବେତ ମାଡ, ବୁଟ ମାଡ଼ ଦେବାକୁ ଅବସ୍ଥାପିତ ହୋଇଥିଲେ । ଲଙ୍ଗଳା କୋରାପୁଟିଆଙ୍କୁ ଜଘନ୍ୟ ଅତ୍ୟାଚାର ଶୀକାର ହୋଇ ପ୍ରାଙ୍ଗଣରୁ ବାହାରି ଯିବାକୁ ପଡୁଥିଲା । ପଛପଟେ ଥିବା ଦୁଇଜଣ ସିପାହୀ ଲଙ୍ଗଳା ହୋଇ ଦଉଡ଼ି ଯାଉଥିବା କଂଗ୍ରେସ ଲୋକଙ୍କୁ କୁକୁରକୁ ଠେଙ୍ଗାମାଡ଼ ଦେଲାଭଳି ଶେଷ ପ୍ରହାର ପକାଉଥିଲେ । ସମ୍ମୁଖ ଦ୍ୱାରରେ ଅବସ୍ଥାପିତ ସିପାହୀ ଚାରିଜଣ ପ୍ରଥମେ ବେତମାଡ ଦେଇ ପ୍ରାଙ୍ଗଣ ମଧ୍ୟକୁ ଧକ୍କା ମାରୁଥିଲେ । କେତେଜଣ କଂଗ୍ରେସ କର୍ମୀ ନିର୍ମମ ମାଡ଼କୁ ସହ୍ୟ କରି ନପାରି ସେଠାରେ ସଙ୍ଜ୍ଞାହୀନ ହୋଇ ତଳେ ପଡ଼ିଯାଇଥିଲେ । କେତେକ ପଶୁତୁଲ୍ୟ ଅତ୍ୟାଚାର ଶୀକାର ହୋଇ ଗୁରୁତର ଭାବେ ଆହତ ହୋଇଥିଲେ । କଂଗ୍ରେସ କର୍ମୀ ଲୋକଙ୍କ ସମସ୍ତ ଖଦଡ଼ କପଡ଼ାକୁ ପୋଡ଼ି ଦିଆଯାଇଥିଲା ।

ନନ୍ଦପୁର ଠାରେ ଥିବା ଅବକାରୀ ବିଭାଗ କାର୍ଯ୍ୟାଳୟକୁ କେତେକ କଂଗ୍ରେସ ଲୋକ ପୋଡ଼ି ଦେଇଥିଲେ । ନନ୍ଦପୁର ଥାନାରେ ଗୌରଚନ୍ଦ୍ର ବିଷୟୀ ଓ ପିତାମ୍ବର ଖିଲ ନାମକ ଦୁଇଜଣ କଂଗ୍ରେସ କର୍ମୀଙ୍କୁ କୋଡରେ ଦୌଡ଼ି ବାନ୍ଧି ଟାଂଗି ଦିଆଯାଇଥିଲା । ଘଣ୍ଟା ଘଣ୍ଟା ସେହି ଅବସ୍ଥାରେ ରଖାଯାଇ ନିର୍ମମ ମାଡ ଦିଆଯାଇଥିଲା । ଦାନ୍ଦପୁଟ ଠାରେ ଥିବା କଂଗ୍ରେସ ଅଫିସକୁ ଜିଲ୍ଲାପାଳ ଓ ଏସ. ପି,ଙ୍କ ଉପସ୍ଥିତିରେ ପୋଲିସ ପକ୍ଷରୁ ଅଗଷ୍ଟ ମାସରେ ପୋଡ଼ି ଦିଆଯାଇଥିଲା । ଏହି କଂଗ୍ରେସ କର୍ମିରେ ସର୍ବପଣ୍ଡ ଭଗବାନ ନାୟକଙ୍କୁ ପଞ୍ଚବର୍ଷ କାରାଦଣ୍ଡ ଓ ୫୫୦ ଟଙ୍କା ଜରିମନାରେ ଦଣ୍ଡିତ କରାଯାଇଥିଲା । ସେ ଜଣେ ସାହାସୀ ଉତ୍ସାହୀ କଂଗ୍ରେସ କର୍ମୀ ଥିଲେ ।

ଏହି ଅଞ୍ଚଳରେ ଥିବା ବହୁ କାଠ ପୋଲିଆଗୁଡିକକୁ ଆନ୍ଦୋଳନ ସମୟରେ ନଷ୍ଟ କରି ଦିଆଯାଇଥିଲା । କାଠରେ ନିର୍ମିତ ହୋଇଥିବାରୁ ସେଗୁଡ଼ିକୁ ସହଜରେ ଧ୍ୱଂସ କରାଯାଇ ପାରିଥିଲା ।

ଲକ୍ଷ୍ମୀପୁର ଓ ଦଶମନ୍ତପୁର ଅଞ୍ଚଳର ବହୁ କଂଗ୍ରେସ କର୍ମୀଙ୍କୁ ଆନ୍ଦୋଳନ ସମୟରେ ଗିରଫ କରାଯାଇଥିଲା । ଏହି ଅଞ୍ଚଳଟି ପରଜା ଓ କନ୍ଧ ସମ୍ପ୍ରଦାୟର ପାର୍ବତ୍ୟ

ଲୋକଙ୍କ ନବାସସ୍ଥଳୀ । କ୍ଷମା ସାହୁ, ଦନବନ୍ଧୁ ଦାସ, ଈଶ୍ୱର ସାହୁ, ପଦ୍ମନାଭ ନାୟକ ପ୍ରମୁଖ ୩୫ ଜଣ କଂଗ୍ରେସ କର୍ମୀଙ୍କୁ ଲାଠି ପ୍ରହାର କରାଯାଇ ଗିରଫ କରାଯାଇଥିଲା ।

ସୁନାବେଡା କଂଗ୍ରେସ କମିଟିର ଆହ୍ୱାନରେ ବହୁ କଂଗ୍ରେସ କର୍ମୀ ଓ ସମର୍ଥକ ଆନ୍ଦୋଳନ କରି ଗିରଫ ହୋଇଥିଲେ । କେତେକ ଲୁଚିରହି ଲାଠି ମାଡ଼ ସହ୍ୟ କରି ବ୍ରିଟିଶ ବିରୁଦ୍ଧରେ ସୁର ଉତ୍ତୋଳନ କରିଥିଲେ । ଏହି ଅଞ୍ଚଳରେ କୋରାପୁଟ ଜିଲ୍ଲାର ସବୁଠାରୁ ଅଧିକ ଟେଲିଫୋନ ତାର କଟା ଯାଇଥିବା । ସୁନାବେଡ଼ା କଂଗ୍ରେସ କମିଟିର କର୍ମୀମାନେ ମାଇଲ ମାଇଲ ଧରି ଟେଲିଫୋନ ତାର କାଟି ଶତ୍ରୁଙ୍କ ଯୋଗାଯୋଗରେ ଏକ ଅଚଳ ଅବସ୍ଥା ସୃଷ୍ଟି କରିଥିଲେ । ଦୁଃଖିଭ ଭୁଲ୍ଲାଳି, ମଧୁ ପାଙ୍ଗୀ, ରାମଚନ୍ଦ୍ର ନାୟକ, ବଳଭଦ୍ର ଶବର ଓ ଅନ୍ୟ କେତେକଙ୍କ ନେତୃତ୍ୱରେ ଆନ୍ଦୋଳନ କାର୍ଯ୍ୟ ସଂଗଠିତ ହୋଇଥିଲା ।

୧୯୮-୪୨ ତାରିଖରେ ରତନ କୁମାରଙ୍କ ନେତୃତ୍ୱରେ କଂଗ୍ରେସ କର୍ମୀଙ୍କ ଏକ ବଡ ଧରଣ ଶୋଭାଯାତ୍ରା ବାହାର କରାଯାଇଥିଲା । କଂଗ୍ରେସ ଶୋଭାଯାତ୍ରୀ ମାନେ ସେମିଳିଗୁଡ଼ା ଥାନା ସମ୍ମୁଖରେ ବିକ୍ଷୋଭ ପ୍ରଦର୍ଶନ କରିଥିଲେ । ଭାରତ ଛାଡ଼ର ବୁଲୁଫଟା ନାରା ସହ ଭାରତ ମାତାର ଜୟଗାନ କରିଥିଲେ । ୧୫ ଜଣ ସଶସ୍ତ୍ର ବ୍ରିଟିଶ ପୋଲିସ ବିକ୍ଷୋଭକାରୀ କଂଗ୍ରେସ କର୍ମୀଙ୍କ ଉପରେ ନିର୍ମମ ଲାଠି ଚାଳନା କରିଥିଲେ । ଲାଠି ମାଡ଼ ଖାଇ ତିନିଜଣ କଂଗ୍ରେସ କର୍ମୀ ସଜ୍ଞାହୀନ ହୋଇପଡ଼ିଥିଲେ । ସଂଗ୍ରାମୀମାନେ ଧରିଥିବା ୧୪ ଗୋଟି ଜାତୀୟ ପତାକା ଓ ୧୪ ଗୋଟି ଗାନ୍ଧିଟୋପି ଟାଣି ନିଆଯାଇ ନଷ୍ଟ କରି ଦିଆଯାଇଥିଲା ।

୧୯୪୨ ମସିହା ଆନ୍ଦୋଳନରେ ପଟାଙ୍ଗୀ ତାଲୁକାର ପ୍ରାୟ ୧୨ ଶହ କର୍ମୀ ତାଲୁକା ସଦରମହକୁମାରେ ଏକତ୍ରିତ ହୋଇଥିଲେ । ମାଲୁ ସାହୁ, ଦିକ୍ରୁ ଚନାହ୍ନି, ଲକ୍ଷ୍ମଣ ଖରା, ଅର୍ଜୁନ ଖରାଙ୍କ ନେତୃତ୍ୱରେ ଶହ ଶହ କଂଗ୍ରେସ କର୍ମୀ ଓ ସମର୍ଥକ ଆଇନ ଅମାନ୍ୟ କରିବାକୁ ପିକେଟିଂ ବିକ୍ଷୋଭ ଇତ୍ୟାଦି କରିଥିଲେ । ଆଇନ ଅମାନ୍ୟ କରି ସ୍ୱେଚ୍ଛାକୃତ ଭାବେ ଦୁଇଶହ ଜଣ ଗିରଫ ହୋଇଥିଲେ । ଗିରଫ କରାଯାଇ କଂଗ୍ରେସ କର୍ମୀଙ୍କୁ ଜେଲକୁ ନିଆଯାଇ ନିର୍ମମ ଲାଠି ପ୍ରହାର କରାଗଲା । ଯାହାଦ୍ୱାରା କେତେକ ସଂଗ୍ରାମୀ ସଜ୍ଞାହୀନ ହୋଇପଡ଼ିଲେ ଓ ଅନେକେ ଗୁରୁତର ଭାବେ ଆହତ ହେଲେ । ଏହି ସମୟରେ ପୋଲିସ ଅତ୍ୟାଚାର ଯୋଗୁଁ ଜଣେ କଂଗ୍ରେସ କର୍ମୀ ଘଟଣାସ୍ଥଳରେ ମୃତ୍ୟୁ ବରଣ କରିଥିଲେ ।

ମାଲକାନଗିରି, ବୈପାରିଗୁଡ଼ା, ମାଛକୁଣ୍ଡ ଓ କୁନ୍ଦ୍ରା ପୋଲିସ ଥାନା ଅନ୍ତର୍ଗତ ସମସ୍ତ ଅଞ୍ଚଳର କଂଗ୍ରେସ କାମ ଦଣ୍ଡମର କଂଗ୍ରେସ କମିଟି ଦ୍ୱାରା ପରିଚାଳିତ ହେଉଥିଲା । ୧୯୩୭ ମସିହାରେ ଏହି ପ୍ରାଥମିକ କଂଗ୍ରେସ କମିଟି ଗଠିତ ହୋଇଥିଲା । ନୀଳକଣ୍ଠ ପାଢ଼ୀ ଏହାର ସଭାପତି ଏବଂ ବୃନ୍ଦା ଦାସ ଉପସଭାପତି ଥିଲେ । କୃପା ଦାସ, ଢଳ ଖଡ଼ିଆ, ପର୍ଶୁରାମଚନ୍ଦ୍ର ପଡ଼ିଆ ଓ ସୁନାଧର ଗଣ୍ଡିଆ କଂଗ୍ରେସ କମିଟିର ସଭ୍ୟ ରହିଥିଲେ । ୧୯୩୯ ମସିହା ଶେଷରେ କଙ୍କଡ଼ାର ବଳରାମ ଖରା ଓ ସୁନାଧର ଖଡ଼ିଆ ମେଣ୍ଟିଗାଁର ମାଧବ ଘାସିଆ, ଡମ୍ବରୁ ମାଳି, ବଳ ଖଡ଼ିଆ, ଅସନାର ଚନ୍ଦ୍ର ନାୟକ କଂଗ୍ରେସ କମିଟିର ସଭ୍ୟ ହେଲେ । ଲଛପୁରର ନରସିଂହ ମାଳି ନାୟକ ଏ ଅଞ୍ଚଳର ଜଣେ ମୁଖିଆ କଂଗ୍ରେସ କର୍ମୀ ଥିଲେ

ପୂର୍ବ ଅଧ୍ୟାୟରେ ମାଛକୁଣ୍ଡଠାରେ ହୋଇଥିବା କଂଗ୍ରେସ ମେଳରେ ପୋଲିସର ଶୃଙ୍ଖଳା ବିଷୟ ଆଲୋଚିତ ହୋଇଛି । ନୀଳକଣ୍ଠ ପାଢ଼ୀ ଏ ଅଞ୍ଚଳର କଂଗ୍ରେସର ନେତୃତ୍ୱ ନେଇ ବହୁତ କାମ କରିଥିଲେ । ସେ ଲକ୍ଷ୍ମଣ ନାୟକଙ୍କ ଉପଦେଷ୍ଟା ଥିଲେ । ବ୍ୟକ୍ତିଗତ ସତ୍ୟାଗ୍ରହରେ ନୀଳକଣ୍ଠ ପାଢ଼ୀ ସତ୍ୟାଗ୍ରହ ପାଇଁ ବ୍ୟାପକ ପ୍ରଚାର କରିଥିଲେ । ସେହି ଅଭିଯୋଗରେ ଭାରତୀୟ ପ୍ରତିରକ୍ଷା ଆଇନର ୩୫ (୫) ଧାରା ଅନୁଯାୟୀ ତାଙ୍କୁ ଏକ ବର୍ଷ ସଶ୍ରମ କାରାଦଣ୍ଡ ଓ ଏକଶହ ଟଙ୍କା ଜରିମନା ଦଣ୍ଡାଦେଶ ହୋଇଥିଲା । ୩୧-୧-୪୧ ତାରିଖରେ ପାଢ଼ୀଙ୍କୁ ଗିରଫ କରାଯାଇଥିଲା ।

ନୀଳକଣ୍ଠ ପାଢ଼ୀ ଜେଲରୁ ଖୋଲାସ ହେବାପରେ ଗାଁଗଣ୍ଡା ବୁଲି କଂଗ୍ରେସ ପ୍ରଚାର କରିଥିଲେ । ତାଙ୍କ ଉଦ୍ୟମରେ ବିଭିନ୍ନ ଅଞ୍ଚଳରେ କପାଚାଷ ଓ ସୂତାକଟା କାର୍ଯ୍ୟ ବ୍ୟାପକ ଭାବେ କରାଯାଇଥିଲା ।

ଅଗଷ୍ଟ ଆନ୍ଦୋଳନ ପାଇଁ ସେ ଲୋକଙ୍କୁ ସଜାଗ କରି ରଖିଥିଲେ । ଖବର ପାଇବା ମାତ୍ରେ ବହୁ ଲୋକଙ୍କୁ ଏକତ୍ର କରି ଜୟପୁର ପଠାଇଥିଲେ । ୧୫-୮-୪୨ ରେ

ଜୟପୁର ହାଟରେ ମାଣ୍ଡଲ, ହମର୍ଗିଶ, ବୈପାରୀଗୁଡ଼ା ଅଞ୍ଚଳର ପ୍ରାୟ ୫୦୦ ଜଣ ଲଠ ଧର ଏକତ୍ରିତ ହୋଇଥିଲେ । ୧୭ ତାରିଖ ସେହି ଲୋକମାନେ ଜୟପୁର ପୋଲିସ ଥାନା ଘେରାଉ କରିଥିଲେ । ୧୭-୮-୪୨ ତାରିଖରେ ଘମର ଓାରେ ନୀଳକଣ୍ଠ ପାଣିଙ୍କୁ ଗିରଫ କରାଯାଇଥିଲା ।

ପୋଲିସର ଗୁପ୍ତ ଫୌଜଦାରୀ ସୂଚିକାରେ ନୀଳକଣ୍ଠ ପାଣିଙ୍କ ସମ୍ପର୍କରେ ମନ୍ତବ୍ୟ ରହିଛି—"Nilakantha is most irresponsible congress leader. He always works through his agents and never taken up open propaganda. He works behind the scene."



ପୂର୍ବ ଅଧ୍ୟାୟରେ ପାପଡ଼ାହାଣ୍ଡି ଭୁଗ୍ରା ନଦୀ କୂଳରେ ହୋଇଥିବା ସ୍ମରଣୀୟ ଗୁଳିକାଣ୍ଡ ଓ ସଂଗ୍ରାମୀଙ୍କ ବିରୁଦ୍ଧରେ ହୋଇଥିବା ଷଡ଼ଯନ୍ତ୍ର ମକଦ୍ଦମା ଆଲୋଚିତ ହୋଇଛି । ସ୍ୱାଧୀନ ସଂଗ୍ରାମ ଅବଧିରେ ନବରଙ୍ଗପୁର ସବ୍‌ଡିଭିଜନରେ ସେହି ଦୁଇଟି ଗୁରୁତ୍ୱପୂର୍ଣ୍ଣ ବିଷୟ ସହ ଅନ୍ୟ କେତେକ କାର୍ଯ୍ୟ ମଧ୍ୟ ବ୍ରିଟିଶ ସରକାରଙ୍କୁ ବିବ୍ରତ କରିଥିଲା । ଦେଖିବାକୁ ଗଲେ ଏହି ସବ୍‌ଡିଭିଜନର କଂଗ୍ରେସ କାର୍ଯ୍ୟ ସମଗ୍ର କୋରାପୁଟ ଜିଲ୍ଲା ସ୍ୱାଧୀନ ସଂଗ୍ରାମ ଇତିହାସର ଅଧିକାଂଶ ସ୍ଥାନ ମାଡ଼ିବସିଛି ।

୧୧-୮-୪୨ ରେ ସର୍ବପ୍ରଥମେ ସଦାଶିବ ତ୍ରିପାଠୀଙ୍କୁ ଗିରଫ କରି ଅଟକ ରଖିଦିଆଗଲା । ୧୩-୮-୪୨ ତାରିଖରେ ବିଶ୍ୱାସ ରାୟଙ୍କ ଦ୍ୱାରା ପ୍ରେରିତ ଗୁପ୍ତ ପତ୍ର ଲକ୍ଷ୍ମୀଚନ୍ଦ୍ର ଦାସଙ୍କ ହସ୍ତଗତ ହୋଇଥିଲା । ସେ ପତ୍ର ବଳରେ ଲକ୍ଷ୍ମୀଚନ୍ଦ୍ର ଦାସ, ସଦାନନ୍ଦ ମହାନ୍ତ, ମହମ୍ମଦ ବାଜା ଓ ସିମାଞ୍ଚଳ ବେହେରା ନବରଙ୍ଗପୁର କଂଗ୍ରେସ କମିଟି ଅଫିସରେ ଆନ୍ଦୋଳନ ବାର୍ତ୍ତା ଲୋକଙ୍କ ପାଖରେ ପହଞ୍ଚାଇବା ପାଇଁ ପ୍ରଚାର ପତ୍ର ମୁଦ୍ରଣ କରିଥିଲେ । ନବରଙ୍ଗପୁର କଂଗ୍ରେସର ସାଇକେଲ ଷ୍ଟାଇଲ ଯନ୍ତ୍ରରେ ପ୍ରାୟ ୪୦ ହଜାର ପ୍ରଚାରପତ୍ର ବଣ୍ଟନ ଲାଗି ପ୍ରସ୍ତୁତ କରାଯାଇଥିଲା । କୋରାପୁଟ ଜିଲ୍ଲାର ଅଧିକାଂଶ ସ୍ଥାନରେ ଏହି ପ୍ରଚାରପତ୍ର ବଣ୍ଟନ ହୋଇଥିଲା ।

୧୩, ୧୪, ୧୫, ତାରିଖ ରାତିରେ ଏହି ପ୍ରଚାରପତ୍ର ଛପା କାମ ଶେଷ ହେବା ପରେ ଏଗୁଡ଼ିକୁ ସିମାଞ୍ଚଳ ବେହେରା, ମହମ୍ମଦ ବାଜା, ଓ ସଦାନନ୍ଦ ମହାନ୍ତ ବିଭିନ୍ନ ସ୍ଥାନକୁ ପ୍ରସାରଣ ପାଇଁ ନେଇଯାଇଥିଲେ । ସିମାଞ୍ଚଳ ବେହେରା ପ୍ରଚାରପତ୍ର ନେଇ ଜୟପୁରର ନୀଳକଣ୍ଠ ସାହୁ, ଘୁନାବେଡ଼ାର ଦୁର୍ଲ୍ଲଭ ହନ୍ତାଳ ଓ ନନ୍ଦପୁରର ଭଗବାନ ଖେମୁଣ୍ଡୁଙ୍କ ପାଖରେ ପହଞ୍ଚାଇଥିଲେ । ମହମ୍ମଦ ବାଜା ଡାବୁଗାଁର ରାଧାଧର ଜାନୀ ଓ ଉମରକୋଟର ରତ୍ନସିଂ ମାଝୀଙ୍କୁ ଦେଇଥିଲେ । ସଦାନନ୍ଦ ମହାନ୍ତ କୋଡ଼ିଙ୍ଗା ପାଇଁ ଧନ ଦଶାଣି ଓ ତେନ୍ତୁଳିଖୁଣ୍ଟି ପାଇଁ ବଳରାମ ନାୟକଙ୍କୁ ପ୍ରଚାରପତ୍ର ଦେଇଥିଲେ ।

ନବରଙ୍ଗପୁର ଥାନାରେ ହ୍ରସ୍ଵ ପ୍ରସାରଣ ଖବର ନାମେ ଲକ୍ଷ୍ମୀଚନ୍ଦ୍ର ଦାସ ରଚିଥିଲେ । ବଙ୍ଗପୁରର ସମ୍ପାଦ ଭଗବ ଓ ବାଦଶିଭଗାର ସମ୍ପାଦ ଅମନାତ୍ୟ ଲକ୍ଷ୍ମୀଚନ୍ଦ୍ର ଦାସଙ୍କ ଦ୍ୱାରା ଗୁପ୍ତଗୃହର କାର୍ଯ୍ୟରେ ନିଯୁକ୍ତ ହୋଇ କଂଗ୍ରେସ କର୍ମୀଙ୍କ କାର୍ଯ୍ୟର ଖବର ଦେଉଥିଲେ । ଏହି ଦୁଇଜଣ କର୍ମୀଙ୍କୁ ସେତେବେଳେ କଂଗ୍ରେସର 'ଡାପ୍‌କାରୀଆ' ବୋଲି କୁହାଯାଉଥିଲା । ସେମାନଙ୍କ କାର୍ଯ୍ୟ ଉଚ୍ଚକୋଟିର ଥିଲା ।

ନବରଙ୍ଗପୁରର ସଂଗ୍ରାମୀ ସଦାନନ୍ଦ ମହାନ୍ତିଙ୍କ ନିବାସ ହିଁ ୧୯୪୨ ଆନ୍ଦୋଳନରେ କଂଗ୍ରେସର ଗୁପ୍ତ କାର୍ଯ୍ୟସ୍ଥଳୀଥିଲା । ଏଠାରେ ଲକ୍ଷ୍ମୀଚନ୍ଦ୍ର ଦାସ ରହି ଆନ୍ଦୋଳନ କାର୍ଯ୍ୟକୁ ନିୟନ୍ତ୍ରଣ କରୁଥିଲେ । ପୋଲିସ ସେହି ଘର ଉପରେ ଚଢ଼ାଉ କରି ଏକ ସଙ୍ଗରେ ଲକ୍ଷ୍ମୀଚନ୍ଦ୍ର ଦାସ, ସଦାନନ୍ଦ ମହାନ୍ତି ଓ ପ୍ରିମାଞ୍ଚଳ ବେହେରାଙ୍କୁ ଗିରଫ କରିଥିଲେ ।

୧୯୪୨ ଆନ୍ଦୋଳନ ସମୟରେ ଏହି ସବଡିଭିଜନରେ ବ୍ରିଟିଶ ସରକାରଙ୍କୁ ସଂଗ୍ରାମୀଙ୍କ କାର୍ଯ୍ୟକୁ ଆୟତ୍ତ କରିବା ପାଇଁ ବହୁତ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ମୁଖ୍ୟ ରାସ୍ତାଗୁଡ଼ିକର କାଠ ବ୍ରିଜ ଧ୍ୱଂସ କରି ଦିଆଯାଇଥିଲା । ଟେଲିଫୋନ ତାର କାଟି ଦିଆଯିବା ସଙ୍ଗେ ସଙ୍ଗେ ରାସ୍ତାଗୁଡ଼ିକ ଅବରୋଧ କରାଯାଇଥିଲା ଯାହାକି ବ୍ରିଟିଶ ପୋଲିସ ଓ ସରକାରୀ ଅଫିସରଙ୍କ ଆଇନ ଶୃଙ୍ଖଳା କାର୍ଯ୍ୟ ନିୟନ୍ତ୍ରଣ କରିବାରେ ବ୍ୟାଘାତ ସୃଷ୍ଟି କରିଥିଲା । ଯୋଗାଯୋଗ ବିଚ୍ଛିନ୍ନ ହୋଇ ଯାଇଥିଲା ।

ସେହି ବିଶେଷ ଘଟଣା ଗୁଡ଼ିକ ଆଲୋଚନା କରିବା ପୂର୍ବରୁ ନବରଙ୍ଗପୁର ସବ୍‌ଡିଭିଜନର କଂଗ୍ରେସ ଓ କଂଗ୍ରେସ କର୍ମୀଙ୍କ ବିଷୟରେ ଜିଲ୍ଲା ପୋଲିସ ଉଚ୍ଚ କର୍ତ୍ତୃପକ୍ଷ ଗୁପ୍ତ ଫୌଜଦାରୀ ପୁସ୍ତିକାରେ ଯାହା ଲିପିବଦ୍ଧ କରିଥିଲେ ତାହା ନିମ୍ନରେ ଉପସ୍ଥାପନ କରୁଛୁ ।

Sodasiva Tripathy and Lakhmi Chandra Das moved about in Nowrangpur Taluk exhorting people to vote for congress with false hopes of remission of forest taxes, shandy taxes, plough taxes etc. As the masswho constitute the electorate in these parts, are generally easily gullible and immense fail to capture their imagination and Sodasiva beat his rival Sri Harihar Misra at the polls with an overwhelming majority. After this initial and great success Sodasiva set, himself up as the

president of Nowrangpur primary congress committee with Lakhmi Chandra Das as the Secretary. This P. C. C. controls whole of Nowrangpur Sub Division. Md. Baji and other joined hands with them and they put all their energies into holding them meetings in different Centres and on educating the illiterate in the policy of Congress, Many congress Gummustas were set up to enroll more and more congress members by all means, fair or fouls. Sodasiva Tripathy. Lakhmi Chandra Das. Md. Baji, G. Anaji Rao and Sadananda Mohanty are most Dangerous.'

Lakhmi Chandra Das, after his release he pursued his former vocation and become more 'Aggressive' He was partly responsible for most of the 'Rebellious Activities' of this Taluk during 1942 Rebellion by his secret instigations before he could be haunted out arrested and convicted for abetement of Dabugam P S. case No. 34/42 [Jatabal Bridge cutting case] He was also an abetor of the Papadahandi Firing incident.

During 1942 Rebellion after the arrest of Sodasiva Tripathy. Lakhmi Chandra Das and Md. Baji slipped away unnoticed and went in to hiding in the interior, from where they instigated lawlessness and created considerable havoc.

ନବରଙ୍ଗପୁର ତାଲୁକାର ସମସ୍ତ ଅଞ୍ଚଳ ଟସ୍ତ କରି ସଦାଶିବ ତ୍ରିପାଠୀ ଓ ଲକ୍ଷ୍ମୀଚନ୍ଦ୍ର ଦାସ ଲଙ୍ଗଳ ଟିକସ, ହାଟ ଟିକସ, ଜଙ୍ଗଲ ଟିକସ ଇତ୍ୟାଦି ଛାଡ଼ ହେବ ବୋଲି ଲୋକଙ୍କୁ ମିଥ୍ୟା ଆଶା ଦେଖାଇ କଂଗ୍ରେସ ପକ୍ଷରେ ଭୋଟ ଦେବାକୁ ପ୍ରଚାର କରିଥିଲେ । ସାଧାରଣତଃ ଏ ଅଞ୍ଚଳର ଭୋଟରମାନେ ସହଜରେ ପ୍ରତାରଣୀୟ । ତେଣୁ ସେମାନେ କଳ୍ପନାର ବଶବର୍ତ୍ତୀ ହୋଇ ଯାଉଥିବାରୁ ତାହାର ସୁଯୋଗ ନେଇ ସଦାଶିବ ତାଙ୍କ ପ୍ରତିଦ୍ୱନ୍ଦୀ ଶ୍ରୀ ହରିହର ମିଶ୍ରଙ୍କୁ ବହୁ ଭୋଟରେ ପରାଜିତ କରିଥିଲେ । ଏହି ପ୍ରାରମ୍ଭିକ ଓ ଅପୂର୍ବ ବିଜୟ ପରେ ସଦାଶିବ ନବରଙ୍ଗପୁର ପ୍ରାଥମିକ କଂଗ୍ରେସ କମିଟିର ସଭାପତି ହୋଇଥିଲେ ଏବଂ ଲକ୍ଷ୍ମୀଚନ୍ଦ୍ର ଦାସ ଏହାର ସମ୍ପାଦକ ହେଲେ । ଏହି ପି ସି, ସି. ସମଗ୍ର ନବରଙ୍ଗପୁର ସବ୍‌ଡିଭିଜନକୁ ନିୟନ୍ତ୍ରଣ କରୁଥିଲା । ମହମ୍ମଦ ବାଜି ଓ ଅନ୍ୟମାନେ ସେମାନଙ୍କ ସହ ହାତ ମିଳାଇଲେ ଏବଂ ସେମାନେ ସମସ୍ତ ଶକ୍ତି ଲଗାଇ ବିଭିନ୍ନ କେନ୍ଦ୍ର

ସ୍ଥାନମାନଙ୍କରେ ସଭା ସମିତି କରି ଅଶିକ୍ଷିତ ଲୋକଙ୍କୁ କଂଗ୍ରେସ କାର୍ଯ୍ୟକ୍ରମ ନେଇ ଶିକ୍ଷା ଦେଉଥିଲେ । ବହୁ କଂଗ୍ରେସ ଗୁମୁସ୍ତାମାନଙ୍କୁ ଯୋଗାଇ ଅଧିକ ସଂଖ୍ୟାରେ କଂଗ୍ରେସ ସଭ୍ୟ ସଂଗ୍ରହ କରିବା ଅଭିଯାନରେ ନିୟୋଜିତ କରାଯାଇଥିଲା । ସଦାଶିବ ତ୍ରିପାଠୀ, ଲକ୍ଷ୍ମୀଚନ୍ଦ୍ର ଦାସ, ମହମ୍ମଦ ବାଙ୍ଗ, ଜ. ଅନାମା ରାଓ ଓ ସଦାନନ୍ଦ ମହାନ୍ତି 'ସାଧାରଣ' ଲୋକ ଅଟନ୍ତି ।

ଲକ୍ଷ୍ମୀଚନ୍ଦ୍ର ଦାସ ଜେଲରୁ ଖଲାସ ହେବା ପରେ (୧୯୪୧) ତାଙ୍କ ପୂର୍ବ କାର୍ଯ୍ୟ ଧାରାରେ ଅଗ୍ରସର ହୋଇଥିଲେ ଏବଂ ଜଣେ 'ଉଗ୍ରପନ୍ଥୀ' ବ୍ୟକ୍ତି ହୋଇ ଯାଇଥିଲେ । ୧୯୪୨ ଆନ୍ଦୋଳନରେ ଏହି ତାଲୁକାରେ ଅଧିକାଂଶ ବୈପ୍ଳବିକ କାର୍ଯ୍ୟ ସଙ୍ଗଠିତ ହେବାରେ ସେ ଦାୟୀ ଅଟନ୍ତି । ଲୋକଙ୍କୁ ଗୁପ୍ତ ଭାବେ ମତାଉଥିବା ବେଳେ ତାଙ୍କୁ ଗିରଫ କରାଯାଇଥିଲା । ଡ଼ାବୁଗାଁ ପୋଲିସ ଷ୍ଟେସନ ମକଦ୍ଦମା ନମ୍ବର ୩୪/୪୨ (କଣ୍ଟାବାଲ ବ୍ରିଜ ଧ୍ୱଂସ ମକଦ୍ଦମା) ର ସେ ମନ୍ତ୍ରଣାକାରୀ ହୋଇଥିବାରୁ ତାଙ୍କୁ ଜେଲ ଦଣ୍ଡାଦେଶ ହୋଇଥିଲା ଏବଂ ପାପଡାହାଣ୍ଡି ଘଟଣାରେ ମଧ୍ୟ ତାଙ୍କର ହାତ ଥିଲା ।

୧୯୪୨ ଆନ୍ଦୋଳନ ସମୟରେ ସଦାଶିବ ତ୍ରିପାଠୀଙ୍କୁ ଗିରଫ କରିବା ପରେ ଲକ୍ଷ୍ମୀଚନ୍ଦ୍ର ଦାସ ଓ ମହମ୍ମଦ ବାଙ୍ଗ ଅନ୍ତର୍ଦ୍ଧାନକ ଭାବେ ଖସି ପଳାଇଥିଲେ । ଗ୍ରାମାଞ୍ଚଳରେ ଗୁପ୍ତ ଭାବେ ରହି ଆଇନ ଅମାନ୍ୟ କାର୍ଯ୍ୟ କରିବାକୁ ପ୍ରବର୍ତ୍ତାଇ ବହୁତ ଆତଙ୍କ ସୃଷ୍ଟି କରିଥିଲେ ।)

୧୭-୮-୧୯୪୨ ତାରିଖରେ ସାନକୁମୁଲି ଠାରେ ବାଘଇହଣ୍ଡିର ମାଧବ ପ୍ରଧାନଙ୍କ ଅଧ୍ୟକ୍ଷତାରେ ଏକ କଂଗ୍ରେସ ବୈଠକ ଅନୁଷ୍ଠିତ ହୋଇଥିଲା । ସେଠାରେ କଂଗ୍ରେସ କର୍ମୀମାନେ ତାରିଖ ନିକଟସ୍ଥ ଗୁଣ୍ଡଣ୍ଡାଠ ନଦୀର କାଠ ପୋଲକୁ ଧ୍ୱଂସ କରି ଦେବାକୁ ନିଷ୍ପତ୍ତି ନେଇଥିଲେ । ୧୯-୮-୧୯୪୨ ରାତି ୯ ଘଣ୍ଟା ସମୟରେ ମାଧବ ପ୍ରଧାନଙ୍କ ନେତୃତ୍ୱରେ ପ୍ରାୟ ୨୦୦ ଜଣ କଂଗ୍ରେସ କର୍ମୀ ଟାକଲି ନିକଟରେ ଉପସ୍ଥିତ ହୋଇ ବ୍ରିଜ ନଷ୍ଟ କରିଦେଇଥିଲେ । ପରେ ଶଗଡ଼ିଆ ଜି. ଭେଙ୍କଟ ଆପ୍ପଡୁ, ପଟ୍ଟନୁର ଲଛପାତ୍ରୋ, ସୁବୁଦ୍ଧୁ ମହମ୍ମଦ ଓ ନାରାୟଣ ପାଡ଼ଙ୍କ ଠାରୁ ପୋଲିସ ଖବର ପାଇ ମକଦ୍ଦମା କରିଥିଲେ । ନବରଙ୍ଗପୁର ପୋଲିସ ଷ୍ଟେସନ ପକ୍ଷରୁ ମକଦ୍ଦମା ନମ୍ବର ୧୨୨/୪୨ ( ଏସ. ଆର. କେଶ ନମ୍ବର ୪୯/୪୨ ) ରେ ଭାରତୀୟ ଦଣ୍ଡବିଧି ଆଇନର ୧୪୩, ୧୪୯, ୪୩୧ ଧାରାରେ ମକଦ୍ଦମା ରୁଜୁ କରାଯାଇଥିଲା ।

ଏଇ ମକଦ୍ଦମାରେ ଅଭିଯୁକ୍ତ କଂଗ୍ରେସ କର୍ମୀମାନେ ହେଲେ (କେଶ ରେକର୍ଡ ଅନୁଯାୟୀ ଅଙ୍କିତ ।

| | | | |
|---|---|---|---|
| ୧ | ମାଧବ ପ୍ରଧାନୀ | — | ବାଘସିଙ୍ଘନା |
| ୨ | ଘେନୁଆ ଅମନାତ୍ୟ | — | ବାଘସିଙ୍ଘନା |
| ୩ | ଅର୍ଜ୍ଜୁନ ଅମନାତ୍ୟ | — | ବାଘସିଙ୍ଘନା |
| ୪ | ଧାଳୁ ଅମନାତ୍ୟ | — | ବାଘସିଙ୍ଘନା |
| ୫ | ବୁଡ଼ା ଅମନାତ୍ୟ | — | ବାଘସିଙ୍ଘନା |
| ୬ | ଜୟୁରାମ ଅମନାତ୍ୟ | — | ବାଘସିଙ୍ଘନା |
| ୭ | ଡ଼ମ୍ବୁ ଭତଡା | — | ବାଘସିଙ୍ଘନା |
| ୮ | ହଦ୍ଦୁ ଭତଡା | — | ବାଘସିଙ୍ଘନା |
| ୯ | ରଘୁନାଥ ଭତଡା | — | ବାଘସିଙ୍ଘନା |
| ୧୦ | ଗୁରୁବାରୁ ଗୌଡ | — | ବାଘସିଙ୍ଘନା |
| ୧୧ | ଦଳାଇଗୁଡ଼ା ଭତଡ଼ା | — | ବଡକୁମୁଲ |
| ୧୨ | ଚଟା ପୁଜାରି | — | ସାନକୁମୁଲ |
| ୧୩ | କୁସ ଗୌଡ଼ | — | ତଣ୍ଡା |
| ୧୪ | ଢେଙ୍ଗୀ ଗୁଡ଼ିଆ | — | ଉର୍ଦ୍ଦି |
| ୧୫ | ସୁନାଧର ଅମନାତ୍ୟ | — | ବାଘସିଙ୍ଘନା |
| ୧୬ | ଗଣ୍ଡାଗୁଡ଼ିଆ | — | ବାଘସିଙ୍ଘନା |
| ୧୭ | ଖଡ଼୍ଗ ଅମନାତ୍ୟ | — | ପାଜଗୁଟ |
| ୧୮ | ଖଡୁ ପ୍ରଧାନୀ | — | ପାଜପୁଟ |
| ୧୯ | ଜୟୁ ଅମନାତ୍ୟ | — | ପାଜପୁଟ |
| ୨୦ | ଅଙ୍ଗୁର ଗୁମସ୍ତା | — | ବାଘସିଙ୍ଘନା |
| ୨୧ | ଫଗୁଣୁ ଭତଡ଼ା | — | ବାଘସିଙ୍ଘନା |
| ୨୨ | କନା ଭତଡା | — | ବାଘସିଙ୍ଘନା |
| ୨୩ | ମାଧବ ଭତଡା | — | ଭରଣପୁର |
| ୨୪ | ସଦନ ଭତଡା | — | ବରଗୁଡ଼ା |
| ୨୫ | ଦୁଲ୍ଲଭ ଭଣ୍ଡା | — | ଢେଙ୍ଗାପଦର |
| ୨୬ | କଗ୍ର ଭଣ୍ଡା | — | କଙ୍ଗା |
| ୨୭ | ଜୟୁ ଅମନାତ୍ୟ | — | ପାଜପୁଟ |

| | | | |
|---|---|---|---|
| ୨୮ | ଜଗ ପାଣ୍ଡ | — | ପାଣ୍ଡପୁଟ |
| ୨୯ | ମଧୁ ପ୍ରଧାନ | — | ବିରଗୁଡ଼ା |
| ୩୦ | ସବନ ଭତ୍ରା | — | ବିରଗୁଡ଼ା |
| ୩୧ | ଗଙ୍ଗାଧର ପରଜା | — | ଫୁଲବାଡ଼ି ମି |
| ୩୨ | ଧନୁର୍ଜୟ ଭତ୍ରା | — | ପଡ଼ାଗୁଡ଼ା |
| ୩୩ | ଚଇ ଭତ୍ରା | — | ସାନକୁମ୍ଳି |

୧୬-୮-୪୨ ରେ ଝେନ୍ତୁଳାଖୁଣ୍ଟି ଥାନା ଅନ୍ତର୍ଗତ ପାଣ୍ଡପୁଟ ଗ୍ରାମରେ କଂଗ୍ରେସ କର୍ମୀମାନଙ୍କ ଏକ ବୈଠକ ଅନୁଷ୍ଠିତ ହୋଇଥିଲା । କେନ୍ଦୁଗୁଡ଼ାର ବଳି ନାୟକଙ୍କ ଆହ୍ୱାନ କ୍ରମେ ଏହି ବୈଠକ ହୋଇ ଗ୍ରାମାଞ୍ଚଳରେ ଆନ୍ଦୋଳନ କରାଯାଇ ଥିଲା । ଏହି ବୈଠକରେ ମାଧବ ପ୍ରଧାନଙ୍କ ଠାରୁ ଖବର ପାଇ ସଂଗ୍ରାମୀମାନେ ଶଙ୍କରି ଯାଇ ବ୍ରିଜ ଭାଙ୍ଗିବା କାର୍ଯ୍ୟରେ ଅଂଶ ଗ୍ରହଣ କରିଥିଲେ ।

କୋରାପୁଟ ଡେପୁଟି ମାଜିଷ୍ଟ୍ରେଟଙ୍କ ଅଦାଲତରେ ଏହି ମକଦ୍ଦମାର ଶୁଣାଣି ନବରଙ୍ଗପୁର୍‌ଠାରେ ହୋଇଥିଲା । ୩୧-୧-୪୩ ରେ ରାୟ ପ୍ରକାଶ ପାଇ ସଂଗ୍ରାମୀଙ୍କୁ କାରାଦଣ୍ଡ ଆଦେଶ ହୋଇଥିଲା ।

୧୯-୮-୪୨ ରାତି ନବରଙ୍ଗପୁର—ପାପଡାହାଣ୍ଡି ରାସ୍ତାରେ ଡାବୁଗାଁ ନିକଟସ୍ଥ ଶଳଭ ଜଙ୍ଗଲ ଗଛ କାଟି ସଂଗ୍ରାମୀମାନେ ରାସ୍ତା ଅବରୋଧ କରି ଦେଇଥିଲେ । ଯାହାଦ୍ୱାରା ପୋଲିସ ବାହିନୀର ଚଳାଚଳରେ ତାହା ବାଧା ସୃଷ୍ଟି କରିଥିଲା । ଏହି ଘଟଣା ନେଇ ନବରଙ୍ଗପୁର ଥାନା ପକ୍ଷରୁ ମକଦ୍ଦମା ନମ୍ବର ୧୨୧/୪୨ (ଏସ, ଆର, କେଶ ନମ୍ବର ୫୦/୪୨) ଭାରତୀୟ ଦଣ୍ଡ ବିଧି ଆଇନର ୧୪୩/୧୪୯/୪୩୧ ଧାରା ଅନୁଯାୟୀ ମକଦ୍ଦମା କରାଯାଇଥିଲା ।

ଏହି ମକଦ୍ଦମା ନେଇ ନିମ୍ନଲିଖିତ ସଂଗ୍ରାମୀମାନଙ୍କୁ ଗିରଫ କରାଯାଇଥିଲା ।

| | | | |
|---|---|---|---|
| ୧ | ଘେନୁଆ ଅମନାତ୍ୟ | — | ଅଟକବେଡ଼ା |
| ୨ | ବଳରାମ ଭତ୍ରା | — | ଅଟକବେଡ଼ା |
| ୩ | ଅର୍ଜୁନ ଅମନାତ୍ୟ | — | ଅଟକବେଡ଼ା |
| ୪ | ଅର୍ଜୁନ (ବଡ) | — | ଅଟକବେଡ଼ା |

| | | | |
|---|---|---|---|
| ୫ | ଜୟରାମ ଅମନାତ୍ୟ | — | ଅଟକବେଡ଼ା |
| ୬ | କାଳି ଜାନି | — | ଅଟକବେଡ଼ା |
| ୭ | ଡମ୍ବରୁ ଭତରା | — | ଅଟକବେଡ଼ା। |
| ୮ | ଗୁରୁବାରୁ ଗୌଡ଼ | — | ଅଟକବେଡ଼ା। |
| ୯ | ରଘୁନାଥ ଭତରା | — | ଅଟକବେଡ଼ା। |
| ୧୦ | ଶ୍ୟାମ ଭତରା | — | ଅଟକବେଡ଼ା। |
| ୧୧ | ଧାଲୁ ଅମନାତ୍ୟ | — | ଅଟକବେଡ଼ା। |
| ୧୨ | ଭଗୀରଥ ଭତରା | — | ଅଟକବେଡ଼ା। |
| ୧୩ | ପଦ୍ମନାଭ ଗଉଡ଼ | — | ଜାମୁଗୁଡ଼ା। |
| ୧୪ | ଶ୍ୟାମସୁନ୍ଦର ସବର | — | ଖଟିଗାଁ। |
| ୧୫ | ଡମ୍ବରୁ ଭନ୍ଦା | — | ଗୁମ୍ଭାଗୁଡା। |
| ୧୬ | କୁରୁମ ନାଥ ଭତରା | — | ଗୁମ୍ଭାଗୁଡା। |
| ୧୭ | ଲବାଣ୍ୟ ଭତରା | — | ସାନ କୁମୁଲି |
| ୧୮ | ସୁନାଧର ଭତରା | — | ମଲ୍ଲୀଗୁଡା। |
| ୧୯ | ଚକ୍ରପାଣି ଡମ୍ବ | — | ମଲ୍ଲୀଗୁଡ଼ା। |
| ୨୦ | ମାଧବ ପ୍ରଧାନି | — | ବାଘସିଉନି |
| ୨୧ | ମାଧବ ସୌରା | — | ଭରଣ୍ଡିପୁର |
| ୨୨ | ସଦନ ଭତରା | — | ବଣଗୁଡା। |
| ୨୩ | ଗଙ୍ଗାଧର ପରଜା | — | ମୁଣ୍ଡାଗୁଡ଼ା। |
| ୨୪ | କୁଶ ଗଣ | — | ଡଣ୍ଡା। |
| ୨୫ | ଜୟସିଂ ଡମ୍ବ | — | ସାନ କୁମୁଲି |
| ୨୬ | ଦୁର୍ଲଭ ଭତରା | — | ଢେଙ୍ଗାପଦର |
| ୨୭ | ନରସିଂହ ପୂଜାରୀ | — | ସାନକୁମୁଲି |
| ୨୮ | ସୁନାଧର ଅମନାତ୍ୟ | — | ବାଘସିଉନି |

ମାଧବ ପ୍ରଧାନିଙ୍କ ନେତୃତ୍ୱରେ ସଂଗଠିତ ଏହି କାର୍ଯ୍ୟରେ ଉପରୋକ୍ତ ୨୮ ଜଣ କଂଗ୍ରେସ କର୍ମୀଙ୍କୁ ପୋଲିସ ଗିରଫ କରିଥିଲେ । ୧୪-୧-୧୯୪୩ ରେ ଏହି ମକଦ୍ଦମାର ରାୟ ପ୍ରକାଶ ପାଇଥିଲା । ମାଧବ ପ୍ରଧାନିଙ୍କୁ ୩ ମାସ ଜେଲ ଦଣ୍ଡ ହୋଇଥିଲା । ଅନ୍ୟମାନଙ୍କୁ ଏକ ମାସ ଜେଲ ଦଣ୍ଡ ହେଲା ।

ଚନ୍ଦିଲି ନିକଟସ୍ଥ ଗୁଣ୍ଡୁଣ୍ଡାଟ ନଦୀର ପୋଲ ଧ୍ୱଂସ କରିବା ସଙ୍ଗେ ସଙ୍ଗେ ଡାବୁଗାଁ । ଥାନା ଅନ୍ତର୍ଗତ ସରଗୁଡା ଓ ଜଟାବାଲ ପୋଲ ମଧ୍ୟ ସଂଗ୍ରାମୀମାନଙ୍କ ଦ୍ୱାରା

ନଷ୍ଟ କର ଦିଆଯାଇଥିଲା । ଯାହା ଫଳରେ ଆଇନ ଅମାନ୍ୟ ଆନ୍ଦୋଳନ ତେଜିଆନ ହୋଇପାରିଥିଲା । ଏହି ଘଟଣାଗୁଡ଼ିକ ଆଲୋଚନା କରିବା ପୂର୍ବରୁ ଏଦ୍ୱାର ପୂର୍ବପର ପ୍ରସଙ୍ଗ ନେଇ ପୋଲିସ ଯେଉଁ ବିବରଣୀ ଲିପିବଦ୍ଧ କରିଥିଲେ ତାହା ନିମ୍ନରେ ଉପସ୍ଥାପନ କରୁଛୁ ।

"On 13-8-42 Lakhmi Chandra Das, of Nowrangpur visited Dabugam shandy and informed Sonu Majhi to break law. At the same time he instigated to damge Soragu a bridge and Jatabal bridge. Sonu Majhi visited the villages and preached people to cut down trees as a result of which in almost all the villagers the galnet trees were cut down. Sonu Majhi visited the villages of Ekamba, Chacharaguda, Pati, Banuaguda, with a mob and damaged the sleepers stocked by N Dear & Co.

( ୧୩-୮-୪୨ ରେ ନବରଙ୍ଗପୁରର ଲକ୍ଷ୍ମୀଚନ୍ଦ୍ର ଦାସ ଡାବୁଗାଁ ହାଟକୁ ଅସିଥିଲେ ଏବଂ ସେ ଆଇନ ଅମାନ୍ୟ କରିବାକୁ ସନୁମାଝୀଙ୍କୁ ପରାମର୍ଶ ଦେଇଥିଲେ । ଏହା ସଙ୍ଗେ ସଙ୍ଗେ ସେ ସରାଗୁଡ଼ା ବ୍ରିଜ ଓ ଜଟାବାଲ ବ୍ରିଜ ନଷ୍ଟ କରିଦେବାକୁ ପ୍ରବର୍ତ୍ତାଇଥିଲେ । ସନୁ ମାଝୀ ଗାଁ ଗାଁ ବୁଲି ଲୋକଙ୍କୁ ଗଛ କାଟିବାକୁ ପ୍ରଚାର କଲେ । ଯାହା ଫଳରେ ସମସ୍ତ ଗ୍ରାମବାସୀ ମୂଲ୍ୟବାନ ଗଛ କାଟି ପକାଇଥିଲେ । ସନୁ ମାଝୀ କଂଗ୍ରେସ କର୍ମୀଙ୍କ ଶୋଭାଯାତ୍ରାରେ ଏକମ୍ବା, ଚଚରାଗୁଡ଼ା, ପାତ୍ରୀ, ବନୁଆଗୁଡ଼ା ଯାଇଥିଲେ ଏବଂ ଏନ ଡ଼ି.ଆର୍. କମ୍ପାନୀର ସ୍ଲିପର କାଠଗୁଡ଼ିକ ନଷ୍ଟ କରିଦେଇଥିଲେ ।)

ଗଛ କାଟିବା ଓ ସ୍ଲିପର ନଷ୍ଟ କରିବା ଅଭିଯୋଗରେ ଡାବୁଗାଁ ଥାନା ପକ୍ଷରୁ ୩୦/୪୨ ଓ ୩୨/୪୨ ନମ୍ବର ମକଦ୍ଦମା କରାଯାଇଥିଲା । ଅଭିଯୁକ୍ତ କଂଗ୍ରେସ କର୍ମୀ ମାନଙ୍କ ବିରୁଦ୍ଧରେ ଭାରତୀୟ ଦଣ୍ଡ ବିଧି ଆଇନର ୧୪୭, ୪୨୬ ଓ ୪୨୭ ଏବଂ ଭାରତୀୟ ପ୍ରତିରକ୍ଷା ଆଇନର ୩୮ ଧାରା ଲଗାଯାଇ ମକଦ୍ଦମା ରୁଜୁ କରାଯାଇଥିଲା । ଏଥିରେ ଅଭିଯୁକ୍ତ କଂଗ୍ରେସ ସତ୍ୟାଗ୍ରହୀମାନେ ହେଲେ ।

| | | | |
|---|---|---|---|
| ୧ | ପର୍ଶୁରାମ ଭତ୍ତରା | — | ଗୁରଗାଁ । |
| ୨ | ଜନ୍ଦୁ ମାଝୀ | — | ଚେପଟିଆମ୍ବ |
| ୩ | ରାଘୁଧର ଜାନି | — | ଗରଡଗୁଡ଼ା । |
| ୪ | ସନୁ ମାଝୀ | — | କୁସୁମବନ୍ଧ |

୫ କାର୍ତ୍ତିକ ଜାନି — ମାଣଆଗୁଡା
୬ ଜଗୁ ମାଝୀ — ବଇଗାଁ
୭ ଡମ୍ବୁ ପରଜା — ମାରଆଗୁଡ଼ା
୮ କାଲିଆ ମାଝୀ — ପଖନାଗୁଡ଼ା

୨୦-୮-୪୨ ତାରଖରେ ପ୍ରାୟ ଏକଶହ କଂଗ୍ରେସ କର୍ମୀ ଶୋଭାଯାତ୍ରାରେ ସରଗୁଡା ଅଭିମୁଖେ ଯାଇ ସରଗୁଡା ବ୍ରିଜ ନଷ୍ଟ କରି ଦେଇଥିଲେ । ଏହି ଘଟଣା ଘଟିବା ପରେ ସଶସ୍ତ୍ର ପୋଲିସ ବାହିନୀ ଘଟଣା ସ୍ଥଳରେ ପହଞ୍ଚି ସମସ୍ତଙ୍କୁ ଗିରଫ କରିଥିଲେ । କିନ୍ତୁ ଏହାର ନେତୃତ୍ୱ ନେଇଥିବା ସନୁ ମାଝୀଙ୍କୁ ଗିରଫ କରି ପାରି ନ ଥିଲେ । ସଂଗ୍ରାମୀମାନଙ୍କୁ ଡାବୁଗାଁ ଥାନାକୁ ଅଣାଯାଇ ଲାଠି ପ୍ରହାର କରାଯାଇଥିଲା । ଏମାନଙ୍କ ବିରୁଦ୍ଧରେ ଡାବୁଗାଁ ଥାନା ପକ୍ଷରୁ କରାଯାଇଥିବା ମକଦ୍ଦମା ନମ୍ବର ୩୯/୪୨ରେ ଭାରତୀୟ ଦଣ୍ଡ ବିଧି ଆଇନର ୧୪୭, ୪୩୧ ଲଗାଯାଇଥିଲା । ନବରଙ୍ଗପୁର ସବ୍‌ଡିଭିଜନ ମାଜିଷ୍ଟ୍ରେଟଙ୍କ ନିର୍ଦ୍ଦେଶ କ୍ରମେ ଲାଠି ପ୍ରହାର ଦ୍ୱାରା ଅଧିକାଂଶଙ୍କୁ ଛାଡ଼ି ଦିଆଯାଇଥିଲା ।

କିନ୍ତୁ ଏହି ବ୍ରିଜ ଭଙ୍ଗା ମକଦ୍ଦମାରେ ନିମ୍ନଲିଖିତ ବ୍ୟକ୍ତିଙ୍କୁ ମକଦ୍ଦମା କରାଯାଇ କାରାଦଣ୍ଡ ଆଦେଶ ହୋଇଥିଲା ।

୧ ଲକ୍ଷ୍ମୀଚନ୍ଦ୍ର ଦାସ — ନବରଙ୍ଗପୁର
୨ ରବିସିଂ ମାଝୀ — କଇଲାସି
୩ ସଦାରାମ ଭତ୍ରା (ମାଝୀ) — ଶେବନା
୪ ଜଗନ୍ନାଥ ଭତରା — କୁସୁମବନ୍ଧ
୫ ସଦା ଚରଣ ଦାସ — କୁସୁମବନ୍ଧ
୬ ସନୁ ମାଝୀ — କୁସୁମବନ୍ଧ

୨୦-୮-୪୨ ତାରିଖ ସକାଳେ ଜଟାବାଲ ନିକଟସ୍ଥ ବ୍ରିଜ କଂଗ୍ରେସ ସଂଗ୍ରାମୀ ଦ୍ୱାରା ନଷ୍ଟ କରି ଦିଆଯାଇଥିଲା । ଡାବୁଗାଁ ଥାନା ପକ୍ଷରୁ ମକଦ୍ଦମା ନମ୍ବର ୩୪/୪୨ରେ ଅଭିଯୁକ୍ତ କଂଗ୍ରେସ ସଂଗ୍ରାମୀମାନଙ୍କ ବିରୁଦ୍ଧରେ ଭାରତୀୟ ଦଣ୍ଡ ବିଧି ଆଇନର ୧୪୭, ୪୩୧ ଓ ୧୦୯ ଧାରା ଲଗା ଯାଇଥିଲା । ଅଭିଯୁକ୍ତ କଂଗ୍ରେସ ସଂଗ୍ରାମୀଙ୍କୁ କାରାଦଣ୍ଡ ଆଦେଶ ହୋଇଥିଲା । ସେହି ସଂଗ୍ରାମୀମାନେ ହେଲେ—

୧ ଲକ୍ଷ୍ମୀଚନ୍ଦ୍ର ଦାସ — ନବରଙ୍ଗପୁର
୨ ସଦାନନ୍ଦ ମହାନ୍ତି — ନବରଙ୍ଗପୁର

| | | | |
|---|---|---|---|
| ୩ | ମହମ୍ମଦ ବାଜା | — | ନବରଙ୍ଗପୁର |
| ୪ | ଅର୍ଜୁନ ମାଝୀ | — | ବାରଗୁଡ଼ା |
| ୫ | ବଣ୍ଡୁ ଭତ୍ରା | — | ଏକର୍ଟ |
| ୬ | ରୂପଧର ଗୌଡ଼ | — | କଣ୍ଡା ଘାଗୁ |
| ୭ | ବର୍ଡ଼ୁ ମାଝୀ | — | ବାସିନୀ |
| ୮ | ଅସାରୁ ଜନ୍ଧ | — | ବାସିନୀ |
| ୯ | ନାଡ଼ୁ ଚଲଣ | — | ଆନ୍ଦୀ |
| ୧୦ | ମିଲୁ ଘାସି (ହରିଜନ) | — | ପାନ୍ଦୀ |
| ୧୧ | ଅର୍ଜୁନ ପାଇକ | — | ବଡ଼ାସନ |
| ୧୨ | କାମିନ୍ଦ୍ର କନ୍ଧ | | ଘୁଟିକୋଟ |
| ୧୩ | ହରି କନ୍ଧ | — | ଘୁଟିକୋଟ |
| ୧୪ | କେଟୁ କନ୍ଧ | — | ଘୁଟିକୋଟ |
| ୧୫ | ଗୁରୁ କନ୍ଧ | — | ଘୁଟିକୋଟ |
| ୧୬ | ସୁନାଧର ଭତ୍ରା | — | ଖର୍କି |
| ୧୭ | ଅର୍ଜୁନ ଘାଟି | — | ଫଟାକଟ |
| ୧୮ | ସନୁ ମାଝୀ | — | କୁସୁମ ବନ୍ଧ |

ମକଦ୍ଦମା ଦାୟର ହେବା ସମୟରେ ଅର୍ଜୁନ ଘାଟି ଓ ସନୁ ମାଝୀ ଫେରାର ଥିଲେ । ଅବଶିଷ୍ଟଙ୍କୁ ଗିରଫ କରି କୋର୍ଟକୁ ଚାଲାଣ କରାଯାଇଥିଲା । ସନୁ ମାଝୀଙ୍କୁ ୮-୧୦-୪୨ ତାରିଖରେ ପାନ୍ଦୀଠାରେ ପୋଲିସ ଗିରଫ କରି ଜେଲକୁ ପଠାଇ ଥିଲେ । ଏହି ଆନ୍ଦୋଳନ ସମୟରେ କଂଗ୍ରେସ ବିରୋଧୀ କେତେକ ଲୋକ ପୋଲିସକୁ ସାହାଯ୍ୟ କରିଥିବାରୁ ସେମାନଙ୍କୁ ଆର୍ଥିକ ପୁରସ୍କାର ଦିଆ ଯାଇ ପୋଲିସ ସୁପରିନଟେଣ୍ଡେଣ୍ଟ ସାର୍ଟିଫିକେଟ ମଧ୍ୟ ପ୍ରଦାନ କରିଥିଲେ । କଂଗ୍ରେସ କର୍ମୀଙ୍କ ବିପକ୍ଷରେ ରହି ପୋଲିସକୁ ସାହାଯ୍ୟ କରି ପୁରସ୍କୃତ ହୋଇଥିବା ବ୍ୟକ୍ତିଙ୍କ ମଧ୍ୟରେ ଡାବୁଗାଁର ଲୋକନାଥ ପାଢ଼ୀ, ଜଟାବାଲର ସେକ ପୀର ସାହେବ ଓ ପାନ୍ଦୀ ଗ୍ରାମର ନାୟକ ଅନ୍ତର୍ଭୁକ୍ତ ।

ଡାବୁଗାଁ ଥାନା ପକ୍ଷରୁ ସତ୍ୟାଗ୍ରହୀଙ୍କ ବିରୋଧରେ ଅଧିକ ଦୁଇଟି ମକଦ୍ଦମା କରାଯାଇଥିଲା । ୧୯-୮-୪୨ ତାରିଖ ରାତ୍ରି ମହମ୍ମଦ ବାଜା, ରାଇଧର ଜାନୀ ଓ ଏକର୍ଟର ବଣ୍ଡୁ ଭତରା ବ୍ରିଟିଶ ଶାସନ ଲୋପ ହେଲା ବୋଲି ପ୍ରଚାର କରୁଥିବା ସମୟରେ ତାଙ୍କୁ ଗିରଫ କରାଯାଇଥିଲା । ଡାବୁଗାଁ ଥାନା ପକ୍ଷରୁ ୩୨/୪୨ ନମ୍ବର ମକଦ୍ଦମା କରାଯାଇ ସି, ଏଲ, ଏ, ଆଇନର ୧୭ (କ) ଧାରା ବଳରେ ମକଦ୍ଦମା ରୁଜୁ

କରାଯାଇଥିଲ । ୨୦-୮-୪୨ ରେ କୋଲ୍ପଙ୍ଗା ଥାନା ଅନ୍ତର୍ଗତ ପଞ୍ଚାଙ୍ଗଗୁଡାର ସୁଦନ ମାଝୀ ଓ ଆମ୍ବାଗାଁର ସମ୍ବୁଦୁ ମାଝୀ ଡ଼ାବୁଗାଁ ଥାନା ଚଢ଼ାଉ କରିବା ଅଭିଯୋଗରେ ଗିରଫ ହୋଇଥିଲେ । ସେମାନଙ୍କ ବିରୁଦ୍ଧ ମକଦ୍ଦମା ନମ୍ବର ୩୩/୪୨ ରେ ଡ଼ାବୁଗାଁ ଥାନା ପକ୍ଷରୁ ଡି, ଏଲ୍, ଆ, ଆଇନର ୧୭ (କ) ଧାରା ଲଗା ଯାଇଥିଲା । ଶୁଣାଣୀପରେ ୨-୧୦-୪୨ ରେ ସ୍ୱେଚ୍ଛା ସଂଗ୍ରାମୀ ଦ୍ୱୟଙ୍କୁ ଚାରିମାସ ସଶ୍ରମ କାରାଦଣ୍ଡ ଆଦେଶ ହୋଇଥିଲା ।

୨୪-୮-୪୨ ତାରିଖରେ ଉମରକୋଟ ଅଞ୍ଚଳର କଂଗ୍ରେସ କର୍ମୀମାନେ ଉମରକୋଟ ଠାରେ ଏକତ୍ରିତ ହୋଇଥିଲେ । ହଜାର ହଜାର କଂଗ୍ରେସ କର୍ମୀ ରବିସିଂ ମାଝୀଙ୍କ ନେତୃତ୍ୱରେ ଏକ ଶୋଭାଯାତ୍ରା ବାହାର କରି ଭାରତ ଛାଡ଼, ଡିକସ ମେଡ଼ିଭଅ ଭାରତମାତାଙ୍କ ଜୟ ପ୍ରଭୃତି ଧ୍ୱନୀ ଦେଇଥିଲେ । ଶୋଭାଯାତ୍ରୀମାନେ ଉମରକୋଟ ଥାନା ଆଗରେ ବିକ୍ଷୋଭ ପ୍ରଦର୍ଶନ କରି ଚଢ଼ାଉ କରିଥିଲେ । କଂଗ୍ରେସ କର୍ମୀମାନଙ୍କ ଉପରେ ସେ ଦିନ ବ୍ରିଟିଶ ପୋଲିସ ନିର୍ମମ ଲାଠି ଚାଳନା କରିଥିଲେ । ବହୁ କଂଗ୍ରେସ କର୍ମୀ ଲାଠି ମାଡ଼ ଖାଇ ଆହତ ହୋଇଥିଲେ । କେତେକଙ୍କୁ ଗିରଫ କରି ନବରଙ୍ଗପୁର ଜେଲକୁ ପଠାଯାଇଥିଲା ।

ରବିସିଂ ମାଝୀ ୨୪-୮-୪୨ ଠାରୁ ପୋଲିସ ଆଖିରେ ଧୂଳି ଦେଇ ଘଞ୍ଚ ଜଙ୍ଗଲ ମଧ୍ୟରେ ବୁଲି କଂଗ୍ରେସ କାମରେ ଲାଗିଥିଲେ । ତାଙ୍କୁ ପୋଲିସ ଧରିପାରି ନଥିଲେ । ରବିସିଂ ମାଝୀ ଓ ପାପୁରୁ ନାୟକ କଂଗ୍ରେସ କର୍ମୀମାନଙ୍କୁ ମନୋବଳ ନ ଭାଙ୍ଗି ସାହସର ସହ କାର୍ଯ୍ୟ କରି ବୁଲିବାକୁ ଗାଁ ଗାଁ ବୁଲି ପ୍ରଚାର କାର୍ଯ୍ୟରେ ନିୟୋଜିତ ହୋଇଥିଲେ । ଏ ଭଳି କି ସେ ଦୁଇଜଣ ସ୍ତ୍ରୀ ବେଶରେ ଅନେକ ଗ୍ରାମରେ ଗୋପନ ଭାବେ ପହଞ୍ଚି କଂଗ୍ରେସ କର୍ମୀଙ୍କ ସହ ସମ୍ପର୍କ ସ୍ଥାପନ କରୁଥିଲେ । ରବିସିଂ ମାଝୀ ଯେତେ ନିଜ ଗ୍ରାମରେ ଥିବା ସମୟରେ ତାଙ୍କୁ ପୋଲିସ ଗିରଫ କରି ନବରଙ୍ଗପୁର ଜେଲକୁ ପଠାଇ ଦେଲେ । ତାଙ୍କ ବିରୁଦ୍ଧରେ ହୋଇଥିବା ମକଦ୍ଦମା ପ୍ରମାଣିତ ହୋଇ ନପାରିବାରୁ ତାଙ୍କୁ ଦୁଇ ମାସ ଜେଲରେ ରଖାଯାଇ ଖୋଲାସ କରାଯାଇଥିଲା ।

ରାଜବନ୍ଧୁ ମିଶ୍ର ଏ ଅଞ୍ଚଳର ଜଣେ ପୁରୁଣା କଂଗ୍ରେସ କର୍ମୀ ଥିଲେ ମଧ୍ୟ ସ୍ୱରାଜ ସଂଗ୍ରାମ ସମୟରେ କଂଗ୍ରେସ ବିରୋଧ କାର୍ଯ୍ୟରେ ଲିପ୍ତ ଥିଲେ । ସେ କଂଗ୍ରେସ କାର୍ଯ୍ୟକୁ ସହଯୋଗ କରିବା ପରିବର୍ତ୍ତେ ସମାଲୋଚନା କରିଥିଲେ । ତାଙ୍କ ବିରୋଧରେ ମଧ୍ୟ କଂଗ୍ରେସ ପକ୍ଷରୁ କଠୋର ସମାଲୋଚନା କରାଯାଇ ସାଧାରଣ ସଭାରେ ଭାଷଣ ଦିଆଯାଇଥିଲା । ଏ ସମ୍ପର୍କରେ ପୋଲିସର ଏକ ରିପୋର୍ଟ ଏଠାରେ ଉପସ୍ଥାପନ କରୁଛି ।

"On 2-5-42 congress M. L. A. Sodasiva Tripathy and R. K Biswasroy called a meeting in Dabugam shandy. The object of calling a meeting is to opppose the propogenda made by one Brajabandhu Misra at Papadahandi. Brajabandhu Misra issued pamphlets criticisig the action of the congress workers. Both the M. L. A.s criticised Brajabandhu Misra in the meeting in most objectionable manner. Lakhmi Chandra Das a rallied speaker of Nowrangpur criticised Brajabandhu Misra in filthy manner."



କୋରାପୁଟ ଜିଲ୍ଲାରେ କଂଗ୍ରେସର ମୂଳସ୍ଥା ଓ ସଙ୍ଗଠନ ନେଇ ଜିଲ୍ଲା ପୋଲିସ ମୁଖ୍ୟଙ୍କ ଦ୍ୱାରା ଏକ ଗୁପ୍ତ ବିବରଣୀ ୧୯୪୩ ମସିହାରେ ପ୍ରସ୍ତୁତ କରାଯାଇଥିଲା । ସେଥିରେ କଂଗ୍ରେସ ନେତୃତ୍ୱ ସଙ୍ଗଠନ ଓ ଅନ୍ୟାନ୍ୟ କେତେକ ଅଜଣା ତଥ୍ୟ ଲିପିବଦ୍ଧ ହୋଇଛି । ସେହି ବିବରଣୀ ନିମ୍ନରେ ଉପସ୍ଥାପିତ କରୁଛୁ ।

“ଜୟପୁର ନିବାସୀ ବିଶ୍ୱମ୍ଭର ସାହୁଙ୍କର ଦୁଇଟି ପୁତ୍ର-ନରସିଂହ ସାହୁ ଓ ରାଧାକୃଷ୍ଣ ସାହୁ । ରାଧାକୃଷ୍ଣ ସାହୁଙ୍କୁ ବିଶ୍ୱମ୍ଭର ସାହୁଙ୍କ ସଡ଼ୁ ପୋଷ୍ୟ-ପୁତ୍ର ଭାବେ ଗ୍ରହଣ କରିଥିଲେ । ତେଣୁ ତାଙ୍କ ନାମ ରାଧାକୃଷ୍ଣ ବିଶ୍ୱାସରାୟରେ ପରିବର୍ତ୍ତିତ ହୋଇଥିଲା । ରାଧାକୃଷ୍ଣ ବିଶ୍ୱାସରାୟ ଏସ,ଏସ,ଏଲ,ସି, ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ ଜୟପୁର ତାଲୁକ ଅଫିସର କିରାଣୀ ରୂପରେ ନିଯୁକ୍ତି ପାଇଥିଲେ ।

ନରସିଂହ ସାହୁ ଜଣେ ବାରବୁଲା ଲୋକ ଥିଲେ । ସେ ନରସିଂହ ପଣ୍ଡାଙ୍କ ସହ ମିଶି ଜମିଦାରଙ୍କ ବିରୁଦ୍ଧରେ ଗୁପ୍ତ ଆନ୍ଦୋଳନ ଚଳାଇଥିଲେ । କ୍ରମେ ସେମାନେ କଂଗ୍ରେସ କର୍ମୀ ହୋଇଗଲେ ଏବଂ ଜୟପୁର ଓ ନିଜ ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ କଂଗ୍ରେସ କାମ କରିଥିଲେ । ଜୟପୁରର ଲୋକନାଥ ରଥ ଓ କୋରାପୁଟରେ କିରାଣୀ କାମ କରୁଥିବା ଦିବାକର ପଟ୍ଟନାୟକ ସେମାନଙ୍କ ସହ ଯୋଗ ଦେଇଥିଲେ । ୧୯୩୦ ମସିହା ପର୍ଯ୍ୟନ୍ତ ସେମାନଙ୍କର ଖୁବ୍ କମ୍ ସହଗାମୀ ଥିଲେ ।

୧୯୩୦ ମସିହା ମେ ମାସରେ ରାଧାକୃଷ୍ଣ ବିଶ୍ୱାସରାୟ କରଣ୍ଡୀ ବୃକଗ୍ରାମ ପ୍ରସ୍ତାବରେ ସେମାନଙ୍କ ସହ ମିଶିଲେ । ବୋରିଗୁମ୍ମା ଥାନାର କୋଣ୍ଡଳ ନିବାସୀ ବିଶ୍ୱନାଥ ନାୟକ ଏବଂ କୁମୁଲିର ମଦନ ଷଡ଼ଙ୍ଗୀ ଓ ଶିବ ତ୍ରିପାଠୀ ସେମାନଙ୍କୁ ସମୟେ ସମୟେ ଅର୍ଥ ସାହାଯ୍ୟ ଯୋଗାଉଥିଲେ ।

ଗାନ୍ଧି ଗୁପ୍ତ ଭାବେ ସଂଗୃହୀତ ହେଉଥିଲା । ବିଶ୍ୱାସ ରାୟଙ୍କ ସମେତ ସୁନାଧର ପଣ୍ଡିଆ, ଲକ୍ଷ୍ମଣ ରଥ, ନଉଆ (ଭୂମିଆ); ଦୁକୁ କୁଣ୍ଡପିଆ ମଧୁକ ହରଶ୍ଚ, ଡଲ କୁଣ୍ଡପିଆ, ସଡିନ ଦୁଷ୍ଟୁଣିଆ ଓ ଗୋବିନ୍ଦ ଭୂମିଆ (ସମସ୍ତ ଧୁମରୁ ଓ ପଖନାଗୁଡା ନିବାସୀ) ୧୯୩୦ ମସିହା ମେ ମାସ ପ୍ରଥମ ସପ୍ତାହରେ କ୍ରିହୁକ୍ରୁ ଯାଇ ଲବଣ ସତ୍ୟାଗ୍ରହଣରେ ଅଂଶ ଗ୍ରହଣ କରିଥିଲେ । ବିଶ୍ୱାସରାୟ ୧୪-୫-୧୯୩୦ରେ ଜୟପୁରରୁ ପ୍ରତ୍ୟାବର୍ତ୍ତନ କରି କୁଣ୍ଡପି, ଧୁମରୁ ପଖନାଗୁଡା ଓ ହରାପୁର ଗ୍ରାମବାସୀଙ୍କ ସହ ଗୁପ୍ତ ସମ୍ପର୍କ ସ୍ଥାପନ କରିବା ଆରମ୍ଭ କରିଥିଲେ । ମାସକ ମଧ୍ୟରେ ସେ ନରସିଂହ ପଣ୍ଡା, ଲୋକନାଥ ରାୟ; ନରସିଂହ ସାହୁଙ୍କ ନେତା ହୋଇ ସାରିଥିଲେ । ବିଶ୍ୱାସରାୟ ଭିଶାଖପାଟଣା ଓ ଗଞ୍ଜାମ ଜିଲ୍ଲାର ମୁଖ୍ୟ କଂଗ୍ରେସ ନେତାମାନଙ୍କ ସହ ଉପାଲାପ କରି ସମ୍ପର୍କ ସ୍ଥାପନ କଲେ । ଧୁମରୁ, ଜୟପୁର ଓ ବୋରିଗୁମ୍ମାଠାରେ ଗୁପ୍ତଭାବେ ଦଳ ଗଠନର ଉଦ୍ୟମ କରିଥିଲେ ।

ଭିଶାଖାପାଟଣାସ୍ଥିତ ରାଜ୍ୟପାଳଙ୍କ ଏଜେଣ୍ଟ ୧୮୧୬ ମସିହା ନିୟମ ୨ଧାରାରେ ବିଶ୍ୱାସରାୟ ଓ ଲବାଙ୍ଗର ପଟ୍ଟନାୟକଙ୍କ ନାମରେ ଏରେଷ୍ଟ ଓ୍ୱାରେଣ୍ଟ ଜାରି କରିଥିଲେ । ଦୁହିଁଙ୍କୁ ୮-୭-୧୯୩୦ରେ ଗିରଫ କରାଯାଇଥିଲା । ତେଣୁ ଆର୍;ସି ନମ୍ବର ୨୨୯/୩୧ ଜ ୨ ଓ ସି; ନମ୍ବର ୮୦୧/ସାଧାରଣ/୩୧ ପ୍ରକାରେ ରାଜ୍ୟପାଳଙ୍କ ଏଜେଣ୍ଟ ଆର୍, ଜେ, ବିଶ୍ୱାସରାୟ ଓ ଲବାଙ୍ଗର ପଟ୍ଟନାୟକଙ୍କୁ ଖୋଲାସ କଲେ । ରାଧାକୃଷ୍ଣ ବିଶ୍ୱାସରାୟ ୭-୫-୧୯୩୧ରେ ଜୟପୁର ଫେରିଲେ । ଖୋଲାସ ହେବାପରେ ସେ ପୁନରପି କଂଗ୍ରେସ ପ୍ରଚାରରେ ଲାଗିଲେ ଏବଂ ଜୟପୁରଠାରେ 'ଉଦ୍ୟୋଗ ମନ୍ଦିର' ପ୍ରତିଷ୍ଠା କରିଥିଲେ ।

ତାଙ୍କୁ ସରକାରଙ୍କ ଅନୁମୋଦନ ବିନା ଏଜେଣ୍ଟ ୧୮୧୯ ମସିହା ଆଇନର ୨ ଏବଂ ଗଞ୍ଜାମ ଓ ଭିଶାଖାପାଟଣା ୧୮୮୯ ଆଇନ ୧୩ ଧାରାରେ ଅନିର୍ଦ୍ଦିଷ୍ଟ ବନ୍ଦୀ ଆଦେଶ ଦିଆଗଲା । ପାରଲାଖେମୁଣ୍ଡିକୁ ଜୟକୃଷ୍ଣ ମିଶ୍ର ଆସି ଜୟପୁରରେ ନେତୃତ୍ୱ ନେଲେ । ନରସିଂହ ସାହୁ ଓ ଜୟକୃଷ୍ଣ ମିଶ୍ରଙ୍କୁ ଗିରଫ କରାଯାଇ ଏକଜେଲସିରୁ ତାହାର କରାଗଲା । ଲବଣ ସତ୍ୟାଗ୍ରହୀ ସୂତ୍ରଧର ଗଣ୍ଡିଆ ଓ ପର୍ଶୁରାମ ରଣ ପଡ଼ିଆଙ୍କୁ ୧୪-୩-୧୯୩୨ରେ ବେଲୋରୀ ଜେଲରୁ ଖୋଲାସ କରାଗଲା ।

ରାଧାକୃଷ୍ଣ ବିଶ୍ୱାସରାୟ, ନରସିଂହ ସାହୁ; ଜୟକୃଷ୍ଣ ମିଶ୍ର ଓ ଦିବାକର ପଟ୍ଟନାୟକ ଗିରଫ ହୋଇ ଜିଲ୍ଲାପରେ କାମ ବନ୍ଦ ହୋଇ ଯାଇଥିଲା । କିନ୍ତୁ ନରସିଂହ ପଣ୍ଡା ଓ ଲୋକନାଥ ରଥ; କୋଟପାଡ଼ର ନାରାୟଣ ଶତପଥି [ଜୟପୁର ବି,ଏଚ ସ୍କୁଲ ଛାତ୍ର] ଓ କୁମୁଦର ଶିବରାମ ତ୍ରିପାଠୀ ୧୯୩୨ ସାଲରେ ସକ୍ରିୟ ହୋଇଥିଲେ । ୧୯୩୨ ସାଲରେ ବ୍ରହ୍ମପୁରସ୍ଥିତ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିକୁ ଶିବରାମ ତ୍ରିପାଠୀ ଟ ୧୩.୮ ଅଣା ପଠାଇଥିଲେ ଏବଂ ଏହା ହିଁ ପୁ,ପି,ସି,କୁ କୋରାପୁଟ ଜିଲ୍ଲାରୁ ପ୍ରଥମ ଦିଆଥିଲା ।

ଜାନୁଆରୀ ୧୯୩୨ରୁ ନରସିଂହ ସାହୁ, ଲୋକନାଥ ରଥ ଧୁମରା ଉଖନାଗୁଡ଼ା, ଦିଗାପୁର, କୁଣ୍ଡୁପି ଓ ବୈଶାଖୀଗୁଡ଼ାରେ ଗୁପ୍ତ କାର୍ଯ୍ୟ ଚଳାଇ ଗ୍ରାମବାସୀଙ୍କ ଅର୍ଥ, ସହଯୋଗ ବଳରେ ସକ୍ଷମ ହୋଇ ପାରିଥିଲେ । ଭିକ୍ଷାବ୍ରତ, ସୂତାକଟା ପତ୍ରିକାବଣ୍ଟା ଓ କଂଗ୍ରେସ ସଭ୍ୟ ସଂଗ୍ରହ କାମ ଗୁଡ଼ିକ ସେହି ଗ୍ରାମ ଗୁଡ଼ିକରେ ଚାଲିଲା ।

୧୯୩୨ ଡିସେମ୍ବର ମାସରେ ମିଃ ଗାନ୍ଧୀ ହରିଜନ ଗନ୍ଧମ ରସ୍ତୁ କରିଥିଲେ । ପଖନାଗୁଡ଼ାର ଭିଲା କୁଣ୍ଡୁପିଆ ଓ ସୂତ୍ରଧର ଗଣ୍ଡିଆ, ଉଦ୍ଧାମ-ଗୁଡ଼ାର ଦମ୍ବାଙ୍କଧି ରଣା ଓ ଗୁରୁ ରଣା, ଧୁମରାର ମାଧବ ବିଶୋଇ ଓ ଉର୍ଦ୍ଧବ ମୁରଲିଆ, ଜୟପୁରର ଦିବାକର ପଟ୍ଟନାୟକ, ନରସିଂହ ପଣ୍ଡା ଓ ନାରାୟଣ ଶତପଥିଙ୍କ ନେତୃତ୍ୱରେ ୨୨-୧୨-୧୯୩୩ରେ ଜୟପୁର ସ୍କୁଲ ଏବଂ

୨୯-୧୨-୧୯୩୩ରେ ସେମାନେ ବ୍ରହ୍ମପୁରଷ୍ଟେସନଠାରେ ମି, ଗାନ୍ଧୀଙ୍କୁ ଭେଟି ଥିଲେ । ସେମାନେ ୭-୧-୧୯୩୩ରେ ନିଜ ଗ୍ରାମକୁ ଫେରିଲେ ।

ରାଧାକୃଷ୍ଣ ବିଶ୍ୱାସରାୟ ଓ ତାଙ୍କ ଭାଇ ନରସିଂହ ସାହୁ (ଯାହାଙ୍କୁ ରାଜମହେନ୍ଦ୍ର ଜେଲରେ ରାଜବନ୍ଦୀ ଭାବେ ରଖାଯାଇଥିଲା) ୨୦-୧୨-୧୯୩୪ରେ ଖଲାସ ହୋଇ ଜୟପୁରକୁ ଫେରିଲେ । ବିଶ୍ୱାସରାୟ ଗ୍ରାମ ଗଠନ କାର୍ଯ୍ୟ କରିବାକୁ ଚାହିଁଲେ ଏବଂ ସେହି ଉଦ୍ଦେଶ୍ୟରେ ନୂଆପୁଟଠାରେ କିଛି ଜମି ସପୁ କଷ୍ଟ ଭିତ୍ତାସ୍ଥାନ ମଠଙ୍କୁ ଦୁଆଇ ଦେଇଥିଲେ ।

୧୯୩୫-୩୬ ମସିହାରେ ରାଧାକୃଷ୍ଣ ବିଶ୍ୱାସରାୟ ପୂର୍ଣ୍ଣମାତ୍ରାରେ ସଙ୍ଗଠନ ପାଇଁ କଂଗ୍ରେସ ସଭ୍ୟ ସଂଗ୍ରହରେ ନିଜକୁ ନିୟୋଜିତ କଲେ । ତାଙ୍କର ଅନୁପ୍ରେରଣାରେ ରାଧାମୋହନ ସାହୁ [ଜୟପୁରର ଗୋପି ଦୃଷ୍ଟାସଙ୍କ ପୁଅ] ଏବଂ ସଦାଶିବ ତ୍ରିପାଠୀ [ନବରଙ୍ଗପୁରର ରାଧାନାଥ ତ୍ରିପାଠୀଙ୍କ ପୁଅ ତଥା ମହାଦେବ ତ୍ରିପାଠୀଙ୍କ ପୌତ୍ର] ଶିକ୍ଷକ ବୃତ୍ତିରୁ ଇସ୍ତଫା ଦେଇ ୧୯୩୬ ମସିହାରେ କଂଗ୍ରେସରେ ମିଶିଲେ । ୧୯୩୧ ମସିହାରେ ପ୍ରତିଷ୍ଠିତ ଜୟପୁର-ସ୍ଥିତ 'ଉଦ୍ୟୋଗ ମଣ୍ଡଳ' ଜୟପୁର କଂଗ୍ରେସ ଅଫିସରେ ପରିଣତ ହେଲା ଏବଂ ବିଶ୍ୱାସରାୟ ଏହାର ସଭାପତି ରହିଲେ । ୧୯୩୫ ଠାରୁ ମାଳକଣ୍ଠ ପାତ୍ର (ଘୁମୁରଗଡର ବୃନ୍ଦା ପାତ୍ରଙ୍କ ପୁଅ) ଜିଲ୍ଲାରେ କଂଗ୍ରେସ ସଗଠନ କାର୍ଯ୍ୟରେ ବିଶ୍ୱାସରାୟଙ୍କୁ ବହୁତ ସାହାଯ୍ୟ କରିଥିଲେ ।

୩୧-୩-୧୯୩୬ରେ ରାଧାକୃଷ୍ଣ ବିଶ୍ୱାସରାୟ ଓ ନବରଙ୍ଗପୁରର ବ୍ରଜବନ୍ଧୁ ମିଶ୍ର ଭାରତୀୟ ଜାତୀୟ କଂଗ୍ରେସର ଅଧିବେଶନରେ ଯୋଗ ଦେବାକୁ ଲକ୍ଷ୍ନୌ ଯାଇଥିଲେ । କଂଗ୍ରେସର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ଜୟପୁର ଠାରେ ପାଳିତ ହୋଇଥିଲା ଏବଂ ରାଧାକୃଷ୍ଣ ବିଶ୍ୱାସରାୟ ଏହାର ମୁଖ୍ୟ ଉଦ୍ୟୋକ୍ତା ଥିଲେ । ଘୁମର ଓ ଝଖନାଗୁଡ଼ାର ଦୁଇଟି ପରିବାରର ମହିଳା ଏହି ଉତ୍ସବରେ ଯୋଗଦେଇଥିଲେ ।

୧୯୩୭ ପ୍ରାରମ୍ଭରେ ହାର୍ଡିକରଙ୍କ ହିନ୍ଦୁସ୍ତାନୀ ସେବାଦଳ କର୍ମୀ ଆଞ୍ଜାଲା ଭେଙ୍କଟସ୍ୱାମୀ ଜୟପୁର ଆସି ରହିଲେ । ଦଳର ଗୁରୁତ୍ୱପୂର୍ଣ୍ଣ ବୈଠକରେ ସେ ଅଂଶ ଗ୍ରହଣ କରୁଥିଲେ ।

୧୯୩୭ ସାଲରେ ଜୟପୁର କଂଗ୍ରେସ କମିଟିକୁ ଉତ୍କଳ ପ୍ରଦେଶ କଂଗ୍ରେସ କମିଟି, କଟକ ଦ୍ୱାରା ପୁନର୍ଗଠିତ କରାଯାଇ ଜିଲା କଂଗ୍ରେସ କମିଟି ଜୟପୁର କରାଗଲା । ତା'ପରେ ରାଧାକୃଷ୍ଣ ବିଶ୍ୱାସରାୟ; ରାଧାମୋହନ ସାହୁ ଓ ସଦାଶିବ ତ୍ରିପାଠୀଙ୍କ ଦ୍ୱାରା ନିର୍ବାଚନ ସମ୍ପନ୍ନ କରାଯାଇଥିଲା । ଏହି ସମୟରେ ନବରଙ୍ଗପୁରର ଲକ୍ଷ୍ମୀଚନ୍ଦ୍ର ଦାସ, ମହମ୍ମଦ ହାଜୀ, ଡା. ପ୍ରସାଦ ରାଓ, ଜୟପୁରର ଦାମୋଦର ସାହୁ; ବ୍ରଜବନ୍ଧୁ ନନ୍ଦ, ସୂର୍ଯ୍ୟଭାନୁ ଦଳେଇ ବିଶ୍ୱାସଭାଜନ ହୋଇଥିଲେ ଏବଂ ସେମାନେ ଜିଲାର ନେତା ହୋଇଗଲେ । କଂଗ୍ରେସ ନେତାମାନେ ସାଫଲ୍ୟ ଲାଭକଲେ ଏବଂ ତାହା ସ୍ୱରାଜ ଓ ସଭ୍ୟ ସଂଗ୍ରହ କରିବାରେ ବେଶ ସହାୟକ ହୋଇଥିଲା । ବର୍ତ୍ତମାନ (ମାର୍ଚ୍ଚ ୧୯୪୩) ଜିଲାରେ ୪୦ ହଜାରରୁ ଊର୍ଦ୍ଧ୍ୱ କଂଗ୍ରେସ ଲୋକ ଅଛନ୍ତି ।

ଗ୍ରାମବାସୀଙ୍କ ଉପରେ ରାଜନୈତିକ ନିୟନ୍ତ୍ରଣ ରଖିବା ପାଇଁ ବିଶ୍ୱାସରାୟ ଜିଲ୍ଲାରେ ପାଞ୍ଚଟି ପ୍ରାଥମିକ କଂଗ୍ରେସ କମିଟି ଆରମ୍ଭ କରିଥିଲେ । ସେତେବେଳେ ପ୍ରାଥମିକ କଂଗ୍ରେସ କମିଟି ଗଠିତହେଲା । ସଦାଶିବ ତ୍ରିପାଠୀଙ୍କୁ ନବରଙ୍ଗପୁର ସର୍କଲ ଓ ରାଧାମୋହନ ସାହୁଙ୍କୁ ଜୟପୁର ଓ କୋରାପୁଟ ସର୍କଲ [ନନ୍ଦପୁର ଓ ମାଲକାନଗିରି ସମେତ]ର ସଙ୍ଗଠନ ଦାୟିତ୍ୱ ଦିଆଯାଇଥିଲା । ସମସ୍ତ ସଙ୍ଗଠନର ଦାୟିତ୍ୱ ରାଧାକୃଷ୍ଣ ବିଶ୍ୱାସରାୟଙ୍କ ନିୟନ୍ତ୍ରଣାଧୀନ ଥିଲା ।

ରାଧାକୃଷ୍ଣ ବିଶ୍ୱାସରାୟ ପାର୍ଲାମେଣ୍ଟାରୀ ସେକ୍ରେଟାରୀ ହେଲେ ଏବଂ ସେହି ଅବଧିରେ ସଙ୍ଗଠନ ଦୁର୍ବଳ ହୋଇପଡୁଥିବା ଅନୁଭବ କଲେ । ତେଣୁ ସେ ଉକ୍ତ ପଦବୀରୁ ଇସ୍ତଫା ଦେଇ ଗାଁ ଗାଁ ବୁଲି ସକ୍ରିୟ କଂଗ୍ରେସକୁ ସୁଦୃଢ଼ କଲେ । ୧୯୩୮ରେ ସେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ଅଧିବେଶନ ଜୟପୁରଠାରେ କରିବାକୁ ଅନୁରୋଧ କରିଥିଲେ ଏବଂ ସେ ପ୍ରକାରେ ତାହା ଜୟପୁରଠାରେ ହୋଇଥିଲା ।

୧୯୩୯-୪୦ ମସିହାରେ ଏହି ଜିଲ୍ଲା ଅନ୍ୟାନ୍ୟ ଜିଲ୍ଲାଠାରୁ କଂଗ୍ରେସ କାମରେ ଅଗ୍ରଣୀ ଥାଇଥିଲା । ୧୯୪୦ରେ କୋରାପୁଟ ଜିଲ୍ଲାରେ ବହୁ ସଂଖ୍ୟକ କଂଗ୍ରେସ ସଭ୍ୟ ହୋଇଥିବାରୁ ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲା ।

ପରେ ୟୁ,ପି,ସି;ସି,ରେ ଦୁଇଗୋଟି ଗୋଷ୍ଠି ସୃଷ୍ଟି ହୋଇଥିଲା । ଶ୍ରୀ ଏଚ, କେ, ମହତାବ ଓ ପଣ୍ଡିତ ନୀଳକଣ୍ଠ ଦାଶ ଗୋଷ୍ଠି । ଆର,କେ; ବିଶ୍ୱାସରାୟ ଜବାହର ପଟ୍ଟନାୟକଙ୍କ ସହ ଅନେକ ବର୍ଷ କାର୍ଯ୍ୟ କରିଥିବାରୁ ତାଙ୍କ ହାତ ବିଶ୍ୱାସରାୟଙ୍କ ସମର୍ଥନ ରହିଥିଲା । ଜବାହର ପଟ୍ଟନାୟକ ପଣ୍ଡିତ ନୀଳକଣ୍ଠ ଦାଶଙ୍କ ଗୋଷ୍ଠିର ଜଣେ ପ୍ରମୁଖ ସଭ୍ୟଥିଲେ । ବଳ ପରୀକ୍ଷା ପାଇଁ ୧୯୪୦ରେ ବ୍ରହ୍ମପୁରଠାରେ ଏକ ସ୍ୱତନ୍ତ୍ର ଅଧିବେଶନ ଡକା ଯାଇଥିଲା ଏବଂ ସେହି ଅଧିବେଶନରେ କୋରାପୁଟ ଜିଲ୍ଲାର ବହୁ ସଂଖ୍ୟକ ସଭ୍ୟ ଯୋଗଦେଇ ପଣ୍ଡିତ ନୀଳକଣ୍ଠ ଦାଶଙ୍କୁ ଭୋଟଦେବାକୁ ବାଧ୍ୟ ଥିଲେ । କିନ୍ତୁ ପଣ୍ଡିତ ଏନ,କେ, ଦାଶ ତାଙ୍କ ଭାଷଣରେ ମିଃ, ଗାନ୍ଧୀଙ୍କୁ ଭର୍ତ୍ସନା କଲେ ଏବଂ ଏ,ଆଇ;ସି;ସି,ର କାର୍ଯ୍ୟକୁ ସମାଲୋଚନା କଲେ । ଏହା କୋରାପୁଟ ଜିଲା ଲୋକଙ୍କୁ ଉତ୍ତେଜିତ କଲା ଏବଂ ସମସ୍ତେ ଏକ ହୋଇ ଶ୍ରୀ ଏଚ,କେ, ମହତାବଙ୍କୁ ସମର୍ଥନ ଜଣାଇ ଥିଲେ । ପଣ୍ଡିତ ନୀଳକଣ୍ଠ ଦାଶ ପରାସ୍ତ ହୋଇଥିଲେ ଏବଂ ଅନ୍ୟ ଗୋଷ୍ଠି ଆର,କେ, ବିଶ୍ୱାସରାୟଙ୍କୁ ୟୁ,ପି,ସି;ସି. କମିଟିରୁ ସସପେଣ୍ଡ କଲେ । ପ୍ରକୃତରେ ଶ୍ରୀ ଏଚ,କେ ମହତାବ ଆର,କେ ବିଶ୍ୱାସ ରାୟଙ୍କୁ ସସପେଣ୍ଡ କରି କୋରାପୁଟ କର୍ମୀଙ୍କୁ କିଣି ନେଇଥିଲେ ଏବଂ ଡି.ସି,ସି ଜୟପୁରକୁ ବହୁତ ଟଙ୍କା ଦାନ କରିଥିଲେ ।

କେତେ ଦିନ ପରେ ଆର,କେ ବିଶ୍ୱାସରାୟ ଅନୁଭବ କଲେ ଯେ ୟୁ,ପି;ସି,ସି କାର୍ଯ୍ୟରେ ଭିଡିକ ଯିବାକୁ ପଡୁଥିବାରୁ ଜିଲାର କାମକରି ପାରୁନାହାନ୍ତି । ତେଣୁ ସେ ୟୁ.ପି,ସି,ସିର ସମ୍ପାଦକ ପଦରୁ ଇସ୍ତଫା ଦେବାକୁ ଇଚ୍ଛା ପ୍ରକାଶ କରିଥିଲେ । କିନ୍ତୁ ୟୁ,ପି;ସି,ସିର ସଭାପତି ଏଚ,କେ ମହତାବ ଜାଣିଥିଲେ ଯେ ସେ [ବିଶ୍ୱାସରାୟ] ନାମକୁ ସମ୍ପାଦକ ଏବଂ ସମସ୍ତ କାମ ଚ' ପି,କେ ଦେଓ ତାଙ୍କ ଦ୍ୱାରା କରାଯିବ । ତେଣୁ ଇସ୍ତଫାପତ୍ର ଗ୍ରହଣ କଲେନାହିଁ ।

ପଶ୍ଚାତ୍ ଡିସେମ୍ବର ୧୯୪୦ରେ ସେ ସତ୍ୟାଗ୍ରହ କରିଥିଲେ । ରାଧାମୋହନ ସାହୁ ଓ ସଦାଶିବ ତ୍ରିପାଠୀ ମଧ୍ୟ ସତ୍ୟାଗ୍ରହ କରିଥିଲେ । ସେହି ତିନି ଜଣ ଏମ୍,ଏଲ୍,ଏ;ଙ୍କୁ ଜେଲଦଣ୍ଡ ହୋଇଥିଲା । ୧୯୪୧ ଫେବୃୟାରୀ ମାସରେ ଲକ୍ଷ୍ମୀଚନ୍ଦ୍ର ଦାସଙ୍କୁ ଭାରତରକ୍ଷା ଆଇନର ୧୨୧/୩୮ [୪] ଧାରା ଅନୁଯାୟୀ ଏକବର୍ଷ ସଶ୍ରମ କାରାଦଣ୍ଡ ହୋଇଥିଲା । ୧୯୪୧ରେ ମନୋନୀତ ୭୩ ଜଣ ବ୍ୟକ୍ତିଗତ ସତ୍ୟାଗ୍ରହ କରିଥିଲେ ।

ସତ୍ୟାଗ୍ରହ କରି ଜେଲ ଦଣ୍ଡାଦେଶ ଭୋଗୀ ଖୋଲାସ ହେବାପରେ ଆର୍, କେ; ବିଶ୍ୱାସରାୟ ଗଠନମୂଳକ କାର୍ଯ୍ୟ ଆରମ୍ଭ କଲେ । ଜପାରୂଷ ସ୍ୱଚ୍ଛତା ଏବଂ ଗ୍ରାମ୍ୟ ସଙ୍ଗଠନ ପ୍ରଭୃତି ମୁଖ୍ୟ କାର୍ଯ୍ୟଗୁଡ଼ିକ କଂଗ୍ରେସ କର୍ମୀମାନଙ୍କ ଦ୍ୱାରା ଜୁଲାଇ ୧୯୪୨ ପର୍ଯ୍ୟନ୍ତ କରାଯାଇଥିଲା ।

ଜୁଲାଇ ୧୯୪୨ରେ ଏ,ଆଇ,ସି,ସିର କାର୍ଯ୍ୟକାରୀ କମିଟି ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରିବାକୁ ପ୍ରସ୍ତାବ ନେଲା ଏବଂ ସେହି ଦିନଠାରୁ ଆର୍;କେ ବିଶ୍ୱାସରାୟ, ରାଧାମୋହନ ସାହୁ, ସଦାଶିବ ତ୍ରିପାଠୀ ଜିଲାର ବିଭିନ୍ନ ଅଞ୍ଚଳ ବୁଲି ସଙ୍ଗଠନ କାମ କରିଥିଲେ ଏବଂ ସମୟ ଆସିଲେ ସେମାନେ ଆତଙ୍କ ସୃଷ୍ଟି କରିବେ ବୋଲି ଠିକ୍ କରିଥିଲେ । କିନ୍ତୁ ସେମାନେ କୌଣସି ସାଧାରଣ ସଭାରେ ଭାଷଣ ନଦେଇ କର୍ମୀମାନଙ୍କ ବୈଠକରେ ଯୋଗ ଦେଉଥିଲେ ।

ଆର୍:କେ ବିଶ୍ୱାସରାୟ ବମ୍ବେ ଏ,ଆଇ,ସି;ସିରେ ଯୋଗଦେବାକୁ ପଥ ପାଇଲେ । ପରେ ସେ ୩୧-୭-୪୨ରେ ବସ୍ତୁପୁରଠାରେ ଏକ ବୈଠକରେ ମିଳିତ ହେବାପାଇଁ ମୁଖ୍ୟ କଂଗ୍ରେସ ନେତାଙ୍କୁ ଜଣାଇଦେଲେ । ସେହି ବୈଠକରେ ୧-ଆର,କେ ବିଶ୍ୱାସରାୟ, ୨-ଆର୍,ଏମ ସାହୁ, ୩-ଏସ୍, ତ୍ରିପାଠୀ ୪-ବ୍ରଜବନ୍ଧୁ ନନ୍ଦ, ୫-କପିଳ ପାତ୍ର, ୬-ବିଶ୍ୱନାଥ ମହାପାତ୍ର, ୭-ଗୋପିନାଥ ସାହୁ, ୮-ଜ,ଅନାଦି ରାଓ, ୯-ଲକ୍ଷ୍ମୀଚନ୍ଦ୍ର ଦାସ, ୧୦-ମହମ୍ମଦ ବାଙ୍ଗା, ୧୧-ସନୁ ମାଝି ୧୨-ଆନନ୍ଦ ବେହେରା, ୧୩-ଈଶ୍ୱର ସିଂ ମାଝୀ, ୧୪-ଗୋପି ପ୍ରଧାନ ୧୫-ରଘୁନାଥ ରନ୍ଧାରୀ, ୧୬-ଜଗବନ୍ଧୁ ଦାସ, ୧୭-ଦାମୋଦର ସାହୁ

୧୮-କୃଷ୍ଣଚନ୍ଦ୍ର ସାନ୍ତ୍ରା ଗାନ୍ତ, ୧୯-ସୂର୍ଯ୍ୟକାନ୍ତ ଡ଼ାଳଇ ୨୦-ନରସିଂହ ଦାସ ୨୧-କୋବ ପ୍ରସାଦ ଚକ୍ରଧାୟକ ୨୨-ମାଳକଣ୍ଠ ସାହୁ ୨୩-ସଦାନନ୍ଦ ମହାନ୍ତ ୨୪-ଦୁଲ୍ଭ ହନ୍ତାଲ ୨୫-ଭଗବାନ ହେମ୍ବ୍ରମ ଓ ୨୬-ଲକ୍ଷ୍ମଣ ବକ୍ସୀ ଯୋଗ ଦେଇଥିଲେ ।

ବୈଠକରେ ଆଚ୍ଚାର୍ଯ୍ୟ ହରିହରଙ୍କ ଉଦ୍‌ବୋଧନ ଦେଇ କହିଥିଲେ ଯେ କଂଗ୍ରେସ ଆଉଥରେ ଅସହଯୋଗ ଆନ୍ଦୋଳନ କରିବାର ସମ୍ଭାବନା ଅଛି ଏବଂ ଏହା ବ୍ରିଟିଶ ସରକାର କମ୍ବା ଭାରତୀୟ ତାଙ୍କଠାରୁ କଂଗ୍ରେସ ପାଇଁ ଜୀବନ ମରଣର ପରିସ୍ଥିତି ସୃଷ୍ଟି କରିବ । ବମ୍ବେ ଏ,ଆଇ,ସି,ସିରେ ତାହାର ନିର୍ଦ୍ଧାରିତ ହେବ । ଯଦି ଆଉଥରେ ଅସହଯୋଗ ଆନ୍ଦୋଳନ ପ୍ରସ୍ତାବ ଗୃହୀତ ହୋଇ ଯାଏ ତାହାହେଲେ ସମସ୍ତ ନେତାଙ୍କୁ ଗିରଫ କରାଯିବ ଏବଂ "ଦେଶିଆ"ଙ୍କୁ ବାଟ ବତାଇବାକୁ ଆଉ କେହି ନଥିବେ । ତେଣୁ ସମସ୍ତେ ନିଜ ନିଜ ଅଞ୍ଚଳକୁ ଫେରିଯିବା ଦରକାର "ଦେଶିଆ"ମାନେ ଯେପରି କଂଗ୍ରେସର ଆହ୍ୱାନକୁ କାର୍ଯ୍ୟ-କାରୀ କରିବେ ସେଥିପାଇଁ ସେମାନଙ୍କୁ ପ୍ରସ୍ତୁତ କରି ରଖିବାକୁ ହେବ । ଯେତେବେଳେ ନେତାମାନେ ଗିରଫ ହୋଇଯିବେ ସେତେବେଳେ କର୍ମୀମାନେ ସମ୍ପୃକ୍ତ ଅଞ୍ଚଳର ନେତା ହୋଇ ଦେଶିଆମାନଙ୍କୁ ଅସହଯୋଗ ଆନ୍ଦୋଳନ କରିବାକୁ ନିର୍ଦ୍ଦେଶନା ଦେବେ । ସେମାନେ କୌଣସି ଚିନ୍ତା ନକରି ଖବର କାଗଜରେ ଯାହା ଜାଣିପାରିବେ ସେ ଅନୁସାରେ କାର୍ଯ୍ୟ କରିବେ ।

ରାଧାମୋହନ ସାହୁ ଓ ସଦାଶିବ ତ୍ରିପାଠୀ ବୈଠକରେ ଉପସ୍ଥିତ ସଭ୍ୟମାନଙ୍କୁ ଶପଥପାଠ କରାଇଥିଲେ । ସମସ୍ତେ ପଞ୍ଚପୁଷ୍ପ ନେଇ ହରିହର-ଙ୍କ ସୂଚନା ପ୍ରକାରେ କାର୍ଯ୍ୟ କରିବାକୁ ଶପଥ କରିଥିଲେ ।

୩-୮-୪୨ରେ ଆଚ୍ଚାର୍ଯ୍ୟ ହରିହର ବମ୍ବେ ଯାଇଲେ ନାହିଁ ଏବଂ ସେଦିନ ଝରିଗୁଡ଼ା ଭଣ୍ଡାରଠାରେ ଦଳର ଏକ ବୈଠକ ହୋଇଥିଲା । ରାଧା ମୋହନ ସାହୁ, ବ୍ରଜବନ୍ଧୁ ନନ୍ଦ, ଦାମୋଦର ସାନ୍ତ୍ରା, କୃଷ୍ଣଚନ୍ଦ୍ର ସାନ୍ତ୍ରା ଗାନ୍ତ ସୂର୍ଯ୍ୟକାନ୍ତ ଡାଲେଇ, କୋବପ୍ରସାଦ ଚକ୍ରଧାୟକ, ନରସିଂହ ଦାସ, ମାଳକଣ୍ଠସାହୁ ବୈଠକରେ ଯୋଗଦେଇଥିଲେ । ଏଥିରେ ହରିହର କଂଗ୍ରେସର ସନ୍ଧାନ

ଲାଗିବାକୁ ପୁଣି ଥରେ ଆହ୍ୱାନ ଦେଇଥିଲେ । ସମସ୍ତ ପ୍ରକାର ଭୟ ବାଧା ଓ ଅତ୍ୟାଚାରର ସମ୍ମୁଖରେ ଆଇନ ଅମାନ୍ୟ ଆନ୍ଦୋଳନକୁ ଦୃଢ଼ଭାବେ କାର୍ଯ୍ୟକାରୀ କରିବାକୁ ନିବେଦନ କରିଥିଲେ । ୯-୮-୧୯୪୨ରେ ବିଶ୍ୱାସରାୟ ବର୍ମ୍ମା ଅଭିମୁଖେ ଯାତ୍ରା କରିଥିଲେ । ବର୍ମ୍ମାଠାରୁ ସେ ଦୁଇଟି ପତ୍ର କୋଟପାଡର ଗୋପିନାଥ ସାହୁ ଓ ଜୟପୁରର ତାଲୁକ ଅଫିସର କରଣୀ ଭି. ଭେଙ୍କଟରାଓଙ୍କ ନିକଟକୁ ପଠାଇଥିଲେ । ଏହି ପତ୍ରରେ ମିଃ ଗାନ୍ଧୀଙ୍କ ବାର୍ତ୍ତା ରହିଥିଲା । ତାକୁ ଆଇନ ୨୬ ଧାରାରେ ତାହାକୁ ଜବତ କରାଯାଇଥିଲା ।

୨୧-୮-୪୨ରେ ରାଧାମୋହନ ସାହୁଙ୍କୁ ଜୟପୁରଠାରେ ଓ ସଦାଶିବ ତ୍ରିପାଠୀଙ୍କୁ ନବରଙ୍ଗପୁରଠାରେ ଗିରଫ କରାଗଲା । ରାଧାକୃଷ୍ଣ ବିଶ୍ୱାସରାୟଙ୍କୁ ବର୍ମ୍ମାରୁ ଫେରୁଥିବା ବେଳେ କୋରାପୁଟଠାରେ ଗିରଫ କରାଗଲା ।

୧୩-୮-୪୨ରେ ମାଳକଣ୍ଠ ସାହୁ; ବ୍ରଜବନ୍ଧୁ ନନ୍ଦ; କୋରାପ୍ରସାଦ ପଟ୍ଟନାୟକ, ନରସିଂହ ଦାସ; ବାମଦେବ ସାହୁ, କୃଷ୍ଣଚନ୍ଦ୍ର ସାହୁ ପାଣ ସୂର୍ଯ୍ୟଧନୁ ଦଳେଇ ହରିଜନ ହଷ୍ଟେଲରେ ମିଳିତ ହୋଇ ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରିବାକୁ ଯୋଜନା କରିଥିଲେ ।

କୋରାପୁଟ ଜିଲ୍ଲାରେ ସେହିଦିନ ଅପରାହ୍ଣରୁ ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ ହୋଇଯାଇଥିଲା । ଗାନ୍ଧୀଙ୍କ ବାର୍ତ୍ତାର ପ୍ରତିଲିପି ସାଇକେଲଷ୍ଟାଇଲ ଯନ୍ତ୍ରରେ ଛପାଯାଇ ବଣ୍ଟନ କରାଗଲା । ଦେଶୀଆ ଲୋକଙ୍କୁ ବୁଝାଇ ଦିଆଗଲା ଯେ ମିଃ ଗାନ୍ଧୀ ପୋଲିସ ଥାନା ଓ ତାଲୁକ ଅଫିସରୁ ବଳପୂର୍ବକ ସ୍ୱରାଜ ହାସଲ କରିବାକୁ ନିର୍ଦ୍ଦେଶ ଦେଇଛନ୍ତି ।

ସେହି ଅନୁଯାୟୀ ୧୩-୮-୪୨ରୁ ବିଶୃଙ୍ଖଳିତ ଜନସମାବେଶ ବିଭିନ୍ନ ସ୍ଥାନରେ ହୋଇଥିଲା । ହାଟଗୁଡ଼ିକରେ ଗଣ୍ଡଗୋଳ କରାଯାଇଥିଲା । ପୋଲିସ ପକ୍ଷରୁ ସେଗୁଡ଼ିକୁ ଧମକ ଓ ବଳ ପ୍ରୟୋଗ ଦ୍ୱାରା ଦମନ କରାଯାଇଥିଲା କ୍ରମେ ସମସ୍ତ ନେତାଙ୍କୁ ଗିରଫ କରାଗଲା ଏବଂ ସେପ୍ଟେମ୍ବର ମାସ ମଧ୍ୟଭାଗରେ ଜିଲ୍ଲାରେ ପୁଣି ଶାନ୍ତ ଫେରି ଆସିଥିଲା । ତେଣୁ ଏହି ପରିସ୍ଥିତିରେ ନେତାମାନଙ୍କୁ ଖୋଲାସ କଲେ ପୁଣି ଆନ୍ଦୋଳନ ଜୋରରେ ଆରମ୍ଭହେବାର ଆଶଙ୍କା ରହିଛି ।

◆

ସ୍ୱରାଜ ସଂଗ୍ରାମ ଅବଧିରେ କୋରାପୁଟ ଜିଲାର ବିଭିନ୍ନ ସ୍ଥାନରେ ଓ ଜେଲ ମଧ୍ୟରେ ପୋଲିସ ପକ୍ଷରୁ ବିଭିନ୍ନ ଘଟଣା ନେଇ କଂଗ୍ରେସ କର୍ମୀମାନଙ୍କୁ ଲାଠି ପ୍ରହାର ଓ ବେୟନେଟ ମାଡ଼ ଦିଆଯାଇଥିଲା । ପୋଲିସ ଅତ୍ୟାଚାରର ଶିକାର ହୋଇ ଲାଠି ଓ ବେୟନେଟ ମାଡ଼ରେ ଅନେକ କଂଗ୍ରେସ କର୍ମୀ ଆହତ ହୋଇଥିଲେ ଏବଂ କେତେକ ମୃତ୍ୟୁ ବରଣ କରିଥିଲେ । ମୃତ୍ୟୁ ବରଣ କରିଥିବା ସମସ୍ତ ଶହୀଦଙ୍କ ସମ୍ପୂର୍ଣ୍ଣ ବିବରଣୀ ସଂଗ୍ରହ ହୋଇ ପାରୁନାହିଁ । ଯେତିକି ସଂଗ୍ରହ କରିବା ସକ୍ଷମ ହୋଇଛୁ ସେମାନଙ୍କ ବିଷୟରେ କେତେପଦ ଲେଖିଛୁ ।

କଟନା ଡୋର —

ଡୋରାଙ୍କ ଘର ପଟାଙ୍ଗୀ ଥାନାରେ । କୋରାପୁଟ ଜିଲା ଜେଲରେ ଦଣ୍ଡ ଭୋଗୁଥିଲେ । ଏକଦା ତାଙ୍କୁ ଜେଲ କର୍ମଚାରୀମାନେ ଭୀଷଣ ଭାବେ ଲାଠି ପ୍ରହାର କରିଥିଲେ । କଟନା ଡୋରା ଲାଠି ପ୍ରହାରରେ ଗୁରୁତର ଭାବେ ଆହତ ହୋଇ ମୃତ୍ୟୁ ବରଣ କରିଥିଲେ ।

ଅର୍ଜୁନ ଭତ୍ରା —

ମୈଦଲପୁର ଥାନା ଅନ୍ତର୍ଗତ ଉସିଗାଁରେ ଅର୍ଜୁନଙ୍କ ନିବାସ । ମୈଦଲପୁର ଥାନାର ସୁଗ୍ରୀ ନାମକ ଜଣେ ପୋଲିସ ସିପାହୀ କୌଣସି ଏକ ବିଷୟ ଅନୁସନ୍ଧାନରେ ଯାଇ ଭତ୍ରାଙ୍କ ଘରେ ପଶିଥିଲେ । ତାଙ୍କଠାରୁ ତଥ୍ୟ ସନ୍ଧାନ କରିବାକୁ ଯାଇ ଭୀଷଣ ଲାଠି ପ୍ରହାର କରିଥିଲେ । ଯାହା ଫଳରେ

ଅତ୍ୟନ୍ତ ଭୟଙ୍କର ଗୁରୁତର ଭାବେ ଆହତ ହୋଇଥିଲେ । ଏକ ମାସ କାଳ ମଧ୍ୟରେ ଶଯ୍ୟାଶାୟୀ ହେବାପରେ ତାଙ୍କର ମୃତ୍ୟୁ ଘଟିଥିଲା ।

ଚେଉଙ୍କ ଅମନାତ୍ୟ—

ବୋଖ୍ରମ୍ପା ଥାନାର ଢମଗ ଗ୍ରାମରେ ଚେଉଙ୍କ ଅମନାତ୍ୟଙ୍କ ଘର । ବୋଖ୍ରମ୍ପା ଥାନା ଅଫିସର କାମଗଆପି ବେତେକ କଂଗ୍ରେସ ସମର୍ଥକ ଓ କଂଗ୍ରେସ କର୍ମୀଙ୍କୁ ଲାଠିମାଡ଼ ଦେଉଥିଲେ । ସେଥିରେ ଚେଉଙ୍କ ଅମନାତ୍ୟ ଗୁରୁତରଭାବେ ଆହତ ହୋଇଥିଲେ । ୧୨ଦିନ ଦୟନୀୟ ଅବସ୍ଥାରେ ରହି ରକ୍ତବାନ୍ତିରେ ତାଙ୍କର ମୃତ୍ୟୁ ହୋଇ ଯାଇଥିଲା ।

କୃଷ୍ଣ ଚଣ୍ଡ—

ଯାନାବେଡ଼ା ଝଞ୍ଜରଗାଁ ଥାନା ଅନ୍ତର୍ଗତ । ଏହି ଗ୍ରାମରେ କୃଷ୍ଣ ଚଣ୍ଡଙ୍କ ଘର । କୃଷ୍ଣ ଚଣ୍ଡ ପୋଲିସ ଓ ସରକାରୀ କର୍ମଚାରୀଙ୍କ ଗାଉଁଟିଆ ଜଉପୁଙ୍କ ଲାଠି ମାଡ଼ର ଶିକାର ହୋଇଥିଲେ । ଛ'ମାସ ଶଯ୍ୟାଶାୟୀ ଅବସ୍ଥାରେ ପଡ଼ିରହିବା ପରେ ତାଙ୍କର ମୃତ୍ୟୁ ଘଟିଥିଲା । କୃଷ୍ଣ ଚଣ୍ଡ ଜଣେ ସାହାସୀ ଓ ଖାଣ୍ଟି କଂଗ୍ରେସ କର୍ମୀଥିଲେ । ତାଙ୍କ ସ୍ତ୍ରୀଙ୍କ ନାମ ସର୍ବପୁରଞ୍ଜଣୀ ।

ଅଭକ୍ଷିତ ଗଣ୍ଡ—

ପାନାବେଡ଼ା ନିକଟରେ ବଡ଼ଖଣ୍ଡି ବୋଲି ଏକ ଛୋଟିଆ ଗ୍ରାମ । ଅଭକ୍ଷିତ ଗଣ୍ଡ ଏହାର ଅଧିବାସୀ । ପୋଲିସର ଲାଠି ପ୍ରହାରରେ ସେ ଆହତ ହୋଇ ଛ'ମାସ କାଳ ଅତି ଦୟନୀୟ ଅବସ୍ଥାରେ ପଡ଼ିଥିଲେ । ଶେଷରେ ତାଙ୍କର ମୃତ୍ୟୁ ଘଟିଥିଲା । ମୃତ୍ୟୁ ସମୟରେ ତାଙ୍କ ସ୍ତ୍ରୀ ଜୀବିତ ନଥିଲେ । ଅଭକ୍ଷିତ ଗଣ୍ଡଙ୍କ ମୃତ୍ୟୁ ସମୟରେ ତାଙ୍କର ଦୁଇଟି ଛୋଟ ପୁଅ ଥିଲେ ।

ରାମ ଭକ୍ତାଣ—

ଝଞ୍ଜରଗାଁ ଥାନା ଲଦୁଆ ପଞ୍ଚାୟତରେ ରାମ ଭକ୍ତାଣଙ୍କ ଘର । ପୋଲିସର ଲାଠି ମାଡ଼ରେ ଆହତ ହୋଇ ମୃତ୍ୟୁ ବରଣ କରିଥିଲେ । ମୃତ୍ୟୁ ସମୟରେ ତାଙ୍କର ଦୁଇଟି ସ୍ତ୍ରୀ-ସନ୍ତାନ ଓ ମେଡ଼କ ଏବଂ ଗୋଟିଏ ଛୋଟ ପୁଅଥିଲେ ।

ସୁଗ୍ରୀସେନ ଖଣ୍ଡାୟତ—

ଝୁଖରଗାଁ ଥାନା ମାଲଗାଁ ନିବାସୀ । ପୋଲିସର ଲାଠି ମାଡ଼ ଖାଇବା ସମୟରେ ହଠାତ ତାଙ୍କର ମୃତ୍ୟୁ ହୋଇ ଯାଇଥିଲା ମୃତ୍ୟୁ ସମୟରେ ତାଙ୍କର କେବଳ ଗୋଟିଏ ପୁଅ ଗୌତମ ଓ ଝିଅ ଶ୍ରୀଷ୍ଟଥିଲେ। ଖଣ୍ଡାୟତଙ୍କ ସ୍ତ୍ରୀ ପୂର୍ବରୁ ଇହଧାମ ତ୍ୟାଗ କରିଥିଲେ ।

ଜଳଧର ଭକତ--

ଏ ମଧ୍ୟ ମାଲଗାଁ ନିବାସୀ କଂଗ୍ରେସ କର୍ମୀଥିଲେ । ପୋଲିସ ମାଡ଼ରେ ତାଙ୍କର ମୃତ୍ୟୁ ଘଟିଥିଲା ।

ସନଧର ଭକତ--

ମାଲଗାଁ ନିବାସୀ ସନଧରଙ୍କ ମଧ୍ୟ ପୋଲିସ ଲାଠି ମାଡ଼ର ଶୀକାର ହୋଇ ଇହଧାମ ତ୍ୟାଗ କରିବାକୁ ପଡ଼ିଥିଲା ।

ଚମରୁ ହରିଜନ—

ପାନାବେଡ଼ା ଚମରୁ ହରିଜନ ସେଠାକାର ରେଭେନ୍ୟୁ ଇନିସ୍ପେକ୍ଟରଙ୍କ ଅତ୍ୟାଚାରର ଶୀକାର ହୋଇଥିଲେ । ରାଜକର୍ମଚାରୀ ରଘୁନାଥ ଚୌଧୁରୀ ଚମାରୁ ହରିଜନଙ୍କୁ ବନ୍ଦୁକ ଦ୍ୱାରା ଆଘାତ କରିଥିଲେ । ବନ୍ଦୁକ ଭୂଷା ସହ ତାଙ୍କୁ ଲାଠି ମାଡ଼ ଦିଆଯାଇଥିଲା । ଘଟଣାସ୍ଥଳରେ ତାଙ୍କର ମୃତ୍ୟୁ ହେବାରୁ ଶବକୁ ଗାଁ ବାହାରେ ଅଣାଇ ଫଗାଡ଼ିଦିଆ ଯାଇଥିଲା ।

ମାଧବ ଧୋବା—

ତେନ୍ତୁଳିଖୁଣ୍ଟି ଥାନା ଅନ୍ତର୍ଗତ ଖୁଣ୍ଟିଆଗୁଡ଼ାର ମାଧବ ଧୋବାଙ୍କ ଘର । ଥାନାର ବାବାବୁଡ଼ା ନାମକ ଜଣେ ପୋଲିସ କର୍ମଚାରୀ ମାଧବଙ୍କୁ ବୁଟ ଓ ଲାଠି ଦ୍ୱାରା ପ୍ରହାର କରିଥିଲେ । ଯାହାର ଫଳରେ ତାଙ୍କର ମୃତ୍ୟୁ ହୋଇ ଯାଇଥିଲା । ଭୁସାନଗା ନିକଟରେ ଯେଉଁ କଂଗ୍ରେସ ଶୋଭାଯାତ୍ରା ଉପରେ ପୋଲିସ ଗୁଳି ଚଳାଇଥିଲେ । ସେଥିରେ ମାଧବ ଧୋବା ଯୋଗ ଦେଇଥିଲେ ।

ଶ୍ରେଷ୍ଠ ବାଳକ—

ଡାବୁଗାଁ ଥାନାର ବଜପୁର ଗ୍ରାମରେ ଶ୍ରୀମନ୍ତ ବୁଦେଇ ଜଣେ କଂଗ୍ରେସ ସମର୍ଥକ ଥିଲେ । ତାଙ୍କର ଗୋଟିଏ ପୁଅଥିଲା । ପୋଲିସ ଉକ୍ତ ଶ୍ରେଷ୍ଠ ବାଳକକୁ ଅମାନୁଷିକତାର ପ୍ରମାଣ ଦେବାକୁ ଯାଇ ଲାଠି ଦ୍ୱାରା ଆଘାତକରି ଥିଲେ । ଯାହାର ଫଳରେ ଉକ୍ତ ଶିଶୁଟିର ମୃତ୍ୟୁ ହୋଇଯାଇଥିଲା ।

ମହମ୍ମଦ ବାଙ୍ଗା···

ସଂଗ୍ରାମୀ ମହମ୍ମଦ ବାଙ୍ଗାଙ୍କୁ ବ୍ରୀଟିଶ ପୋଲିସ ଚତୁର୍ଦ୍ଦଗୁଣ୍ଡାରେ ନିର୍ମମଭାବେ ମାଡ ମାରିଥିଲେ । ତାଙ୍କୁ ତଳେ ପକାଇ ଦଳଅଣାଇ ଦୁଇ ହାତ ଉପର ବୁଟମାଡ଼ ଦିଆଯାଇଥିଲା । ଜଗତସିଂହପୁରକୁ ଗିରଫ କରି ଆଣିବା ସମୟରେ ସଂଗ୍ରାମୀ ମହମ୍ମଦ ବାଙ୍ଗାଙ୍କୁ ହାତକୋଡ଼ି ଦେଇ ଚଲାଇ ଚଲାଇ ଆଣିଥିଲେ । ଝାଡା ପରିସ୍ରା ସମୟରେ ମଧ୍ୟ ତାଙ୍କ ହାତ ଖୋଲାଯାଇନଥିଲା ।



ବ୍ରିଟିଶ ରାଜର ନଗ୍ନର ପଶୁତ୍ୱ ପଣିଆ ଓ ପ୍ରତିହିଂସା ପରାୟଣତାକୁ ଶୀର୍ଷସ୍ଥାନରେ ପହଞ୍ଚାଇବାକୁ ଯାଇ ଭୋଗପୁରର ମା' ଭଉଣୀଙ୍କ ଉପରେ ଅମାନୁଷିକ ଅତ୍ୟାଚାର କରିଥିଲା । ଭୋଗପୁରିଆ ସ୍ୱରାଜ ସଂଗ୍ରାମୀ ଓ ସେମାନଙ୍କ ସମର୍ଥକଙ୍କ ଝିଅ, ବୋହୂ ଏ ଜାତିର ସ୍ୱାଧୀନତା ପାଇଁ ନିଜର ପ୍ରାଣ ସ୍ୱରୂପ ସତୀତ୍ୱକୁ ଜଳାଞ୍ଜଳି ଦେବାକୁ ବାଧ୍ୟ ହୋଇଥିଲେ । ସ୍ୱରାଜ ସଂଗ୍ରାମର ଅନେକ ମୁହୂର୍ତ୍ତ ବ୍ରିଟିଶ ଓ ରାଜକର୍ମଚାରୀଙ୍କ ପାଶବିକ ଅତ୍ୟାଚାରର ପଶୁତ୍ୱ ପଣିଆର ସୂଚକଭାବେ ବିଦ୍ୟମାନ ।

ଘଟଣା ଗୁଡିକରୁ ଜଣାଯାଇଅଛି ପାଶବିକ ଅତ୍ୟାଚାରର ଧମକ ଓ ଶିକାର ହୋଇ ମଧ୍ୟ ଭୋଗପୁରିଆ ମା' ଭଉଣୀ ବ୍ରିଟିସକୁ କୌଣସି ପ୍ରକାର ସାହାଯ୍ୟ ଦେଇନଥିଲେ । କଂଗ୍ରେସ ସଂଗ୍ରାମୀଙ୍କ ବିଷୟରେ ଜାଣି ମଧ୍ୟ ପାଟି ଖୋଲି ନଥିଲେ । ନିଜ ଜୀବନ ଇଜ୍ଜତ ସବୁ କିଛି ତ୍ୟାଗ କରି ସେହି ପ୍ରକାରସୁ ମା' ଭଉଣୀ ସ୍ୱରାଜ ସଂଗ୍ରାମ ଇତିହାସରେ ନିଜକୁ ସାମିଲ କରି ଅବିସ୍ମରଣୀୟ ହୋଇ ରହିଛନ୍ତି । ସେହି କରୁଣ ମୁହୂର୍ତ୍ତର ଭୋଗପୁରିଆଣୀର ଦୁଃଖଦ ହୃଦୟର ଅଭିଶାପ ବ୍ରିଟିଶକୁ ଏ ମାଟିରୁ ତଡ଼ିବା ପାଇଁ ଉଦ୍ଦିଷ୍ଟ ଆନ୍ଦୋଳନର ଏକ ବିଶେଷ ଅଂଶ ।

ଡ଼ାବୁଗାଁ ଥାନା ପିନ୍ଧଗାଁରେ ଝୁମଣି ମେସ୍ତ୍ରି ଭତ୍ରାଣୀଙ୍କ ଘର । ସେ ମଙ୍ଗ୍ଳୁ ଭତ୍ରାଙ୍କ ସ୍ତ୍ରୀ । କଂଗ୍ରେସ ସଂଗ୍ରାମୀଙ୍କ ସମର୍ଥକ ଓ ଶୁଭାକାଂକ୍ଷୀ । ନଡ଼ଲ୍ଲ ନାମକ ଜଣେ କଂଗ୍ରେସ ସଂଗ୍ରାମୀଙ୍କୁ ଠାବ କରିବାକୁ ଯାଇ ଡ଼ାବୁଗାଁ

ଥାନାର ବୈରାଗୀ ପାତ୍ର ଓ ଲକ୍ଷ୍ମଣ ମହାନ୍ତି ଗାଁର କେତେକ କର୍ମଚାରୀଙ୍କ ସହ କସ୍ତୁରୀଙ୍କ ଘରେ ପ୍ରବେଶ କରିଥିଲେ । ସେ ଦିନ ବୁଧବାର ଥିଲା । ମଝିରାତରେ କସ୍ତୁରୀଙ୍କ ଘରେ ପଶିଯାଇ ମେଷ୍ଟି କସ୍ତୁରୀଙ୍କଠାରୁ ବିପ୍ଳବୀଙ୍କ ବିଷୟରେ ତଥ୍ୟ ସଂଗ୍ରହ କରିବାକୁ ଲାଗିଲେ । ମେଷ୍ଟି କସ୍ତୁରୀ କଂଗ୍ରେସ ସଂଗ୍ରାମୀଙ୍କ ବିଷୟରେ ପଦଟି ମଧ୍ୟ ପାଟିରୁ ବାହାର କରିନଥିଲେ । ପରେ ପୋଲିସ ଓ ରାଜକର୍ମଚାରୀ କସ୍ତୁରୀ ବିପ୍ଳବୀଙ୍କୁ ଲୁଚାଇ ରଖିଥିବା ଅଭିଯୋଗ କରି ଅସଭ୍ୟ ଭାଷାରେ ଗାଳି ଗୁଲଜ ଆରମ୍ଭ କଲେ । ତାହା ବ୍ରିଟିଶର ପଦଲେହନକାରୀଙ୍କୁ କିଛି ସାହାଯ୍ୟ କରି ନଥିଲା । ସେମାନେ ତତ୍‌କ୍ଷଣାତ ମେଷ୍ଟି କସ୍ତୁରୀଙ୍କୁ ମାଡ଼ ମାରିଲେ । ହେଲେ ବି ତଥ୍ୟ ସଂଗ୍ରହ ହୋଇ ପାରିନଥିଲା । ଉପସ୍ଥିତ ସମସ୍ତ କର୍ମଚାରୀ ଜଣକପରେ ଜଣେ କସ୍ତୁରୀଙ୍କୁ ପାଶବିକ ଅତ୍ୟାଚାର କଲେ । ଫଳରେ ତାଙ୍କ ଯୌନାଙ୍ଗ ଫୁଲି ଯାଇଥିଲା । ଯୌନାଙ୍ଗ ବ୍ୟଥା ଓ ରକ୍ତକ୍ଷରଣ ରୋଗରେ ପୀଡ଼ିତ ହୋଇ ଅଳ୍ପ ଦିନପରେ ମୃତ୍ୟୁମୁଖରେ ପଡିଥିଲେ । ବିବାହର ଅଗ୍ରଣୀ ଜୀବନରେ ସ୍ୱି ସ୍ୱରାଜ ପାଇଁ ତାଙ୍କର ଅକାଳ ମୃତ୍ୟୁ ହୋଇଥିଲା । ମେଷ୍ଟି କସ୍ତୁରୀ ରାଜପୁର ନିବାସୀ ଜୟସିଙ୍ଗଙ୍କ କନ୍ୟା । ମା'ଙ୍କ ନାମ ଦୁଃଖୀ ।

ଡାବୁଗାଁ ଥାନାର ଅନ୍ୟ ଏକ ଗ୍ରାମ ଖୋଲ୍ । ଏଠାରେ ଜୟସିଙ୍ଗ ଲହରାଙ୍କ ଘର । ସ୍ତ୍ରୀଙ୍କ ନାମ ସୁବର୍ଣ୍ଣ । ବୟସ ୨୨ ବର୍ଷ ମାତ୍ର । ସନ ୧୯୪୨ । ସମୟରେ ଲକ୍ଷ୍ମୁ ଭଟ୍ରା ନାମକ ଜଣେ କଂଗ୍ରେସ ସଂଗ୍ରାମୀକୁ ଖୋଜିବାକୁ ଯାଇ ଡାବୁଗାଁ ଥାନାର କେତେକ ପୋଲିସ ଓ ରାଜକର୍ମଚାରୀ ଜୟସିଙ୍ଗଙ୍କ ଘରେ ପ୍ରବେଶ କରିଥିଲେ । ପୋଲିସ ସୁବର୍ଣ୍ଣଙ୍କଠାରୁ ସଂଗ୍ରାମୀ ଜଣଙ୍କ ବିଷୟରେ ପଚାରିଥିଲେ । କିନ୍ତୁ କୌଣସି ଉତ୍ତର ପାଇଲେ ନାହିଁ । ଫଳରେ ସମସ୍ତଙ୍କ ପାଶବିକ ଅତ୍ୟାଚାରର ଶିକାର ହେଲେ । ଯୌନ ବେଦନାରେ ଅଠଦିନ ଶଯ୍ୟାଶାୟୀ ଅବସ୍ଥା ରହିବା ପରେ ଶେଷରେ ତାଙ୍କର ମୃତ୍ୟୁ ହୋଇଥିଲା । ତାଙ୍କର ବଳସାଇ ନାମକ ଶିଶୁଟିଏ ଥିଲା । ବସ୍ତର ଜିଲ୍ଲାର ଗଡ଼ାଖଣ୍ଡି ଗ୍ରାମନିବାସୀ ବଡାଙ୍କ କନ୍ୟା ସୁବର୍ଣ୍ଣ । ସ୍ତ୍ରୀର ମୃତ୍ୟୁପରେ ଜୟସିଂହ ଜୀବନରେ କଳାମେଘ ଦେଖାଦେଲା । ସେ ବିଶେଷ ମର୍ମାହତ ହୋଇ ଯାଇଥିଲେ । ସ୍ତ୍ରୀର ଚିନ୍ତାରେ ତିନି ବର୍ଷ ବଞ୍ଚିରହିବା ପରେ ତାଙ୍କର ମଧ୍ୟ ମୃତ୍ୟୁ ହୋଇଗଲା ।

ଚୈତନ୍ୟ ଭୂଷା ଉମରକୋଟ ଥାନାର ଧାମଁ ଗ୍ରାମନିବାସୀ। ସ୍ତ୍ରୀଙ୍କ ନାମ ଯଶୋଦା। ପୋଲିସ କର୍ମଚାରୀମାନେ ମିଛଗାଁର କଂଗ୍ରେସ ସଂଗ୍ରାମୀ ନନ୍ଦ ଭକ୍ତଙ୍କୁ ଖୋଜିବାକୁ ଯାଇ ଧାମଁ ଗ୍ରାମରେ ପହଞ୍ଚିଥିଲେ। ଚୈତନ୍ୟ ଭୂଷାଙ୍କ ଘରୁ ନନ୍ଦ ଭକ୍ତଙ୍କୁ ଗିରଫ କରି ଆଣି ଗାଁର ସମ୍ମୁଖରେ ଥିବା ଏକ ଗଛରେ ବାନ୍ଧି ପକାଇଲେ। ତାପରେ ଚୈତନ୍ୟ ଭୂଷାଙ୍କୁ ଘରୁ ଟାଣି ଆଣି ସେ ନନ୍ଦ ଭକ୍ତଙ୍କ ସହ ବନ୍ଧାଗଲା। ଏହା ଦେଖି ଯଶୋଦା ଘରୁ ପଳେଇବାକୁ ଉଦ୍ୟମ କରିଥିଲେ। ପୋଲିସ କର୍ମଚାରୀ ଓ ବନ କର୍ମଚାରୀମାନେ ଗୋଡ଼ାଇଯାଇ ଯଶୋଦାଙ୍କୁ ଝିମ୍ପି ଆଣିଥିଲେ। ସ୍ୱାମୀଙ୍କ ସମ୍ମୁଖରେ ଯଶୋଦାଙ୍କୁ ଉଲଗ୍ନ କରାଗଲା। ପୋଲିସ କର୍ମଚାରୀମାନେ ସ୍ୱାମୀ ଆଗରେ ସ୍ତ୍ରୀ ଯଶୋଦାଙ୍କୁ ପାଶବିକ ଅତ୍ୟାଚାର କଲେ।

ଉକ୍ତ ଗ୍ରାମର ଅନ୍ୟ ଜଣେ ମହିଳାଙ୍କୁ ମଧ୍ୟ ପାଶବିକ ଅତ୍ୟାଚାରର ଶିକାର ହେବାକୁ ପଡ଼ିଥିଲା। ଜାବୁଗାଁ ଥାନାର ମଦନ ବୈରାଗୀ ଓ ପାଣ ଦାମନ ତିନିଜଣ କନେଷ୍ଟବଲ ଜାବୁଗାଁ ଅଞ୍ଚଳରେ ଫେରାର୍ ଥିବା କେତେକ କଂଗ୍ରେସ ସଂଗ୍ରାମୀଙ୍କ ସମ୍ପର୍କରେ ତଥ୍ୟ ସଂଗ୍ରହ କରିବାକୁ ଯାଇ ସାଦନଙ୍କ ଭଟସୁଙ୍କ ଘରେ ପ୍ରବେଶ କରିଥିଲେ। ପୋଲିସ କଂଗ୍ରେସକର୍ମୀମାନେ କେଉଁଠାରେ ଆତ୍ମଗୋପନ କରିଛନ୍ତି ସେ ବିଷୟରେ ପଚାରିଲେ। ସାଦନଙ୍କ ସ୍ତ୍ରୀ ଆଇନ୍ତି ବଣରୁ କାଠ ଧରି ଘରକୁ ଫେରୁଥିଲେ। ଘର ନିକଟରେ ପହଞ୍ଚିବା ବେଳେ ତାଙ୍କ ଆଖି ପୋଲିସ ଉପରେ ପଡ଼ିଲା। ତେଣୁ ସେ ଦଉଡ଼ି ପଳାଇବାକୁ ଉଦ୍ୟମ କଲେ। ପୋଲିସ ୩ ଜଣଙ୍କ ସାଙ୍ଗରେ ଥିବା ବନକର୍ମଚାରୀ ଆଇନ୍ତିଙ୍କୁ ଧରି ପକାଇଲେ। ତାଙ୍କୁ ସେହିଠାରେ ପୋଲିସ ସମସ୍ତଙ୍କ ଆଗରେ ଲଙ୍ଗଳା କଲେ।

ମାଲବେଡ଼ା ଗ୍ରାମରେ ମାଡ଼ାଇ କୁମ୍ଭାର ଅନାଥ ଯୁବତୀ କାନ୍ଦ। ମୂକ ବଧିର ଥିବାରୁ ତାକୁ ସମସ୍ତେ କାନ୍ଦ ବୋଲି ଡାକୁଥାନ୍ତି। କେତେକଜଣ ପୋଲିସ ରାତିରେ ଶୋଇଥିବା ସମୟରେ ଘରେ ପ୍ରବେଶ କରି ପାଶବିକ ନିର୍ଯ୍ୟାତନାରେ କାନ୍ଦକୁ ଜଡ଼ାଇ ଦେଇଥିଲେ।

ଝୋରିଗାଁ ଥାନା ଗୁମୁଣ୍ଡି ଗ୍ରାମରେ ପଣ୍ଡ୍ ଶିରଙ୍କ ଘର। ପୋଲିସ କର୍ମଚାରୀମାନେ ପଣ୍ଡ୍ ଶିରଙ୍କ ଯୁବତୀ ଅବିବାହିତା କନ୍ୟାଙ୍କୁ ପାଶବିକ ଅତ୍ୟାଚାର

କରିଥିଲେ । ଏହି ଥାନାର କଣ୍ଟ୍ରୁଗୁଡ଼ା ନିବାସୀ ଓମ୍ବୁରୁ ମାଝୀଙ୍କ ଝିଅକୁ ମଧ୍ୟ ପୋଲିସର ପାଶବିକ ଅତ୍ୟାଚାର ଶୀକାର ହେବାକୁ ପଡ଼ିଥିଲା । ଓମ୍ବୁରୁ ମାଝୀ କଂଗ୍ରେସର ଜଣେ ନିଷ୍ଠାପର କର୍ମୀ ଥିଲେ । ନବରଙ୍ଗପୁର ଜେଲରେ ଆନ୍ଦୋଳନ କରି ବନ୍ଦୀଥିବା ସମୟରେ ତାଙ୍କର ମୃତ୍ୟୁ ହୋଇ ଯାଇଥିଲା ।

ମୈଦଲପୁର ଥାନାର ପଲସାଗୁଡ଼ା ଗ୍ରାମରେ ଶ୍ୟାମ ସୁନ୍ଦର ଭକ୍ତ ନାମକ ଜଣେ କଂଗ୍ରେସର ସମର୍ଥକ ରହୁଥାନ୍ତି । ମୈଦଲପୁର ଥାନାର ସୁଗ୍ରୀ ନାମକ ଜଣେ କନେଷ୍ଟେବଲ ତାଙ୍କ ସ୍ତ୍ରୀଙ୍କୁ ପାଶବିକ ଅତ୍ୟାଚାର କରିଥିଲା । ଏହି ଥାନାର ଉମ୍ପିଗାଁ ନିବାସୀ ଅରଚିତ ଭଞ୍ଜଙ୍କ ସ୍ତ୍ରୀ ସମୁନା ମଧ୍ୟ କେତେକ ପୋଲିସ କର୍ମଚାରୀଙ୍କ ପାଶବିକ ଅତ୍ୟାଚାରର ଶୀକାର ହୋଇଥିଲେ ।

ପଦ୍ମଲମ କଲର ଜଣେ କଂଗ୍ରେସ କର୍ମୀ । ଝରିଗାଁ ଥାନାର ପାଲଗାଁରେ ତାଙ୍କର ନିବାସ । ତାଙ୍କର ଦୁଇଜଣ ସ୍ତ୍ରୀ ଥିଲେ ଗମ୍ଭା ଓ ସୂର୍ଯ୍ୟ । ଜଗନ୍ନାଥ ଓ ରାଜେନ୍ଦ୍ର ନାମକ ଦୁଇଜଣ ପୋଲିସ କନେଷ୍ଟେବଲ ଏବଂ କାଣ୍ଡୁ ଓ ଘନଶ୍ୟାମ ନାମକ ଦୁଇଜଣ ଫରେଷ୍ଟ ଗାର୍ଡ କଲରଙ୍କ ଉଭୟ ସ୍ତ୍ରୀଙ୍କୁ ବଳାତ୍କାର କରି ଇଜ୍ଜତ ନେଇଥିଲେ ।

ଡାବୁଗାଁ ଥାନାର ପତ୍ରାଗୁଡ଼ା ନିବାସୀ ରଘୁନାଥ ମାଝୀଙ୍କ ଝିଅ ଓ ବୋହୂ ନଭପୁଙ୍କୁ ଉକ୍ତ ଥାନାର ଚନ୍ଦନ ଓ ବୈରାଗୀ ନାମକ ପୋଲିସ କର୍ମଚାରୀ ପାଶବିକ ଅତ୍ୟାଚାର କରିଥିଲେ । ସେମାନଙ୍କ ସହ ମଦନ ଧାଙ୍ଗି ନାମକ ଜଣେ ବ୍ୟକ୍ତି ମଧ୍ୟ ପୋଲିସ ସହାୟତାରେ ମାଝୀଙ୍କ ଝିଅ ଓ ବୋହୂଙ୍କୁ ଉପଭୋଗ କରିଥିଲେ । ବ୍ରିଟିଶର ଗୁମସ୍ତମାନେ ରବଣାଗୁଡ଼ାର ଗଞ୍ଜୁ ପୂଜାରୀଙ୍କ ସ୍ତ୍ରୀକୁ ମଧ୍ୟ ଟାଣିନେଇ ବଳାତ୍କାର କରିଥିଲେ । ଡାବୁଗାଁ ଥାନାର ଅନ୍ୟ କେତେକ ପୋଲିସ କର୍ମଚାରୀଙ୍କ ଦ୍ୱାରା ସିନ୍ଧିଗାଁ ନିବାସୀ ଧନେଇ ଲହର୍ଣ୍ଣିଙ୍କୁ ମଧ୍ୟ ଅତ୍ୟାଚାରିତ ହେବାକୁ ପଡ଼ିଥିଲା ।

ବୈପାରୀଗୁଡ଼ା ଥାନାର ମିନାରବେଲ ଗ୍ରାମର ନାରାୟଣ ଭାଣ୍ଡ୍ରକ ନାମକ ଜଣେ କଂଗ୍ରେସ କର୍ମୀଙ୍କ ଝିଅକୁ ପୋଲିସ ପାଶବିକ ଅତ୍ୟାଚାର କରିଥିଲେ ।

ନେମିଗୁଣ୍ଡା ଗ୍ରାମଟି ମାଥିଲି ଥାନା ଅନ୍ତର୍ଗତ । ସେଠାରେ ଲକ୍ଷ୍ମଣ ନାୟକଙ୍କ ଜଣେ ମୁଖିଆ କଂଗ୍ରେସ କର୍ମୀଥିଲେ । ସେ ସ୍ଥାନର ଜମିଦାରର ପଦଲେହନକାରୀ କେଶବ ପାତ୍ର । ସ୍ୱରାଜ ସଂଗ୍ରାମ ସମୟରେ କେଶବ ପାତ୍ର କେତେକ ପୋଲିସ କର୍ମଚାରୀଙ୍କ ସହ ଲକ୍ଷ୍ମଣ ନାୟକଙ୍କ ଘରକୁ ଯାଇ ତାଙ୍କ ପରିବାର ସମସ୍ତ ସ୍ତ୍ରୀ ଲୋକଙ୍କୁ ବାଣ୍ଡକୁ ଟାଣି ଆଣିଥିଲେ । କେଶବ ପାତ୍ରର ନିର୍ଦ୍ଦେଶରେ ଅନୁଚରମାନେ ସେହି ସ୍ତ୍ରୀ ଲୋକଙ୍କୁ ପାଶବିକ ଅତ୍ୟାଚାର କରିଥିଲେ । କଂଗ୍ରେସରେ ମିଶିଲେ ଏବଂ ସ୍ୱରାଜ ସଂଗ୍ରାମକୁ ସମର୍ଥନ କଲେ ସମସ୍ତଙ୍କୁ ଏହିଭଳି ଅତ୍ୟାଚାର ଶିକାର ହେବାକୁ ପଡ଼ିବ ବୋଲି ସତର୍କ କରାଇଥିଲେ ।

କୋଡ଼ିଙ୍ଗା ଥାନାର ଫାଲସାଗୁଡ଼ା ନିବାସୀ ଧନ ଖଣସ୍ୱ ଜଣେ ମୁଖିଆ କଂଗ୍ରେସ କର୍ମୀଥିଲେ । ସେ ଜେଲ ଯିବାପରେ ପୋଲିସ କର୍ମଚାରୀ କ୍ରମାଗତ ତାଙ୍କ ଘରକୁ ଆସି ପରିବାର ଲୋକଙ୍କୁ ହଇରାଣ ହରକତ କରୁଥିଲେ । ତାଙ୍କର ଭଉଜଙ୍କୁ ପୋଲିସ ପାଶବିକ ଅତ୍ୟାଚାର କରିଥିଲେ ।

ସ୍ୱରାଜ ସଂଗ୍ରାମରେ କଂଗ୍ରେସର ଆହ୍ୱାନକ୍ରମେ ଗୁଣୁପୁର ଅଞ୍ଚଳ ଅନେକ ମହିଳା କର୍ମୀ ସ୍ୱରାଜ ପାଇଁ କାରାଦଣ୍ଡ ଭୋଗ କରିଥିଲେ । ଗୁଣୁପୁର ଜେଲରେ ସେମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରାଯାଇଥିଲା । ମହିଳା କର୍ମୀ ବନ୍ଦୀମାନଙ୍କୁ ଗୋଟିଏ ଶାଢ଼ୀ ପିନ୍ଧିବା ପାଇଁ ଦିଆଯାଇଥିଲା । ଯାହା ଫଳରେ ସେମାନେ ଅର୍ଦ୍ଧନଗ୍ନ ଅବସ୍ଥାରେ ଜେଲ ମଧ୍ୟରେ ଗାଧୋଇବାକୁ ବାଧ୍ୟ ହେଉଥିଲେ । କେତେକ ଜେଲ କର୍ମଚାରୀଙ୍କ ଲୋଲୁପ ଦୃଷ୍ଟିର ଶିକାର ହୋଇ ସେମାନେ ଯନ୍ତ୍ରଣା ଭୋଗ କରିଥିଲେ ।



କୋରାପୁଟ ଜିଲ୍ଲାର ସ୍ୱାଧୀନ ସଂଗ୍ରାମ ଇତିହାସର ଏକ ଅଧ୍ୟାୟ କୋରାପୁଟ ଜିଲ୍ଲା ଜେଲ ଏକ ସ୍ମାରକୀ ସଦୃଶ୍ୟ ରହିଛି । ଏହା ସ୍ୱାଧୀନ ସଂଗ୍ରାମ ସମୟର ଜମପୁରୀ । ଏଠାରେ ସଂଗ୍ରାମୀମାନଙ୍କୁ ବିଭିନ୍ନ ଉପାୟ ଓ ପରିସ୍ଥିତିରେ ଚାପି ଦିଆଯାଇ ମୃତ୍ୟୁ ମୁଖକୁ ଠେଲିଦିଆ ଯାଇଥିଲା । ସ୍ୱାଧୀନ ସଂଗ୍ରାମରେ ଯୋଗଦେଇ କାରାଦଣ୍ଡ ଭୋଗ କରୁଥିବା ୫୦ ଜଣ ସଂଗ୍ରାମୀଙ୍କୁ ଏହି ଜେଲରେ ଅକାଳ ମୃତ୍ୟୁ ବରଣ କରିବାକୁ ପଡ଼ିଥିଲା । ତେଣୁ ୧୯୪୫ ସାଲ ଅକ୍ଟୋବର ୨୪ ତାରିଖରେ କଲିକତାରୁ ପ୍ରକାଶିତ 'ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ' ଓ ଓଡ଼ିଶାରୁ ପ୍ରକାଶିତ 'ନ୍ୟୁ-ଓଡ଼ିଶା' ଦୈନିକ ସମ୍ବାଦପତ୍ରଦ୍ୱୟ ତାଙ୍କ ସମ୍ପାଦକୀୟରେ ମନ୍ତବ୍ୟ ଦେଇ ସମସ୍ୱରରେ କହିଥିଲେ— "୧୯୪୨ରେ କୋରାପୁଟ ଜିଲ୍ଲାରେ ଘଟିଥିବା ଅତ୍ୟାଚାର ଓ ଦମନର ବର୍ଣ୍ଣନା କଲାବେଳେ କୋରାପୁଟ ଜିଲ୍ଲା ଜେଲରେ ମୃତ୍ୟୁ ବରଣ କରିଥିବା ୫୦ ଜଣ ରାଜନୈତିକ ବନ୍ଦୀଙ୍କୁ ବାଦଦେଇ ଲେଖା ଯାଇ ପାରିବନାହିଁ । ଏହା ନାଜୀମାନଙ୍କ ବେଲସନ କନସେନ୍‌ଟ୍ରେସନ କ୍ୟାମ୍ପଠାରୁ କମନୁହେଁ ।" କୋରାପୁଟ ବ୍ରିଟିଶ ଜେଲରେ କଂଗ୍ରେସ କର୍ମୀଙ୍କ ଉପରେ ଅତ୍ୟାଚାର, ଅଖାଦ୍ୟ ଯୋଗାଣ; ଚିକିତ୍ସା ଅଭାବ ଦୁର୍ଭିକ୍ଷ ମଣିଷକୃତ ବ୍ୟବସ୍ଥାର ଶିକାର ହୋଇ ୫୦ ଜଣ କୋରାପୁଟିଆ ସଂଗ୍ରାମୀ ସ୍ୱାଧୀନ ପାଇଁ ନିଜ ଜୀବନ ଦେଇ ସ୍ମରଣୀୟ ହୋଇଛନ୍ତି ।

କୋରାପୁଟ ଜିଲ୍ଲା ଜେଲରେ ୨୫୦ ଜଣ ବନ୍ଦୀଙ୍କୁ ରଖିବାର ବ୍ୟବସ୍ଥା ରହିଥିଲା । ୧୯୪୨ ସ୍ୱାଧୀନ ସଂଗ୍ରାମରେ ଏହି ଜେଲରେ ଅଠ ଶହରୁ ଊର୍ଦ୍ଧ୍ୱ ବନ୍ଦୀଙ୍କୁ ଭର୍ତ୍ତି କରାଯାଇଥିଲା । ଯେଉଁ ସେଲରେ ଜଣେ ମାତ୍ର ବନ୍ଦୀ

ରହିବାର କଥା, ସେଠାରେ ୬/୭ ଜଣଙ୍କୁ ରଖାଯାଉଥିଲା । ଜେଲର ସୁପରିଣ୍ଟେଣ୍ଡେଣ୍ଟ ସର୍ବେ ସିଭିଲ ସର୍ଜନ ଥିଲେ । ୮୪ ସପ୍ତାହରେ ଥରେ ଜେଲ ପରିଦର୍ଶନ କରିବା କଥା କିନ୍ତୁ ସଂଗ୍ରାମୀମାନେ ଜେଲରେ ରହିବା ଅବଧି ମଧ୍ୟରେ କେବଳ ଛ'ଥର ଜେଲ ପରିଦର୍ଶନ କରିଥିଲେ ।

ସଂଗ୍ରାମୀମାନଙ୍କୁ ପ୍ରତ୍ୟହ ଜେଲରେ ମୁଡାଭାତ, ପୋକମିଶା ଡାଲି ଏବଂ ଏକ ପ୍ରକାର ମୂଳାଶାଗ ଓ ଖଡ଼ା ତରକାରୀ ଖାଇବା ପାଇଁ ଦିଆଯାଉଥିଲା । ପ୍ରତ୍ୟହ ରାତ ୧୨ଟାରେ ରନ୍ଧାଯାଇ ଆସନ୍ତା କାଲି ପାଇଁ ତାହାକୁ ଚଟାଣରେ ରଖାଯାଉଥିଲା । ରାତିରୁ ବଣ୍ଟାଯାଇ ରଖାଯାଉଥିବା ପେଜ (ତରଣି)ରେ ଅଳ୍ପ ଡାଲି ପାଣିକୁ ମାଡ଼ ମିଶାଯାଉଥିଲା । ମଣ୍ଡିଆ ରୁଟି ଓ ଡାଲି ଖାଇବାକୁ ଦିଆଯାଉଥିଲା । ସଂଗ୍ରାମୀମାନେ ତାହା ଖାଇବା ବେଳେ ସେଥିରୁ ଦୁର୍ଗନ୍ଧ ଜାତ ହେଉଥିଲା । ଭାତରେ ଗୋଡି ବାଲିର ପରିମାଣ ଯଥେଷ୍ଟ ଥିଲା । ଭୋଜନ ସମୟରେ ସଂଗ୍ରାମୀମାନଙ୍କ ଆଖିରୁ ଲୁହ ବୋହି ପଡୁଥିଲା ।

ବନ୍ଦୀମାନଙ୍କୁ ପୋଷାକ ଭାବେ କେବଳ ଗୋଟିଏ ଜାମିଜ ଓ ଗୋଟିଏ ଚେଡ଼ି ଦିଆଯାଉଥିଲା । ଶୋଇବା ପାଇଁ ଖଣ୍ଡେ ସେତରଞ୍ଜି ଓ ଘୋଡ଼ାଇବା ପାଇଁ ଖଣ୍ଡେ ଚାଦର ମିଳୁଥିଲା । କପଡ଼ାରେ ଉକୁଣିର ଭରତି ଯୋଗୁଁ ରାତସାରା ବନ୍ଦୀମାନେ ଆରାମରେ ଶୋଇ ପାରୁନଥିଲେ ।

କୋରାପୁଟ ଜେଲ ସେ ସମୟରେ ଏକ ରୋଗ ଉତ୍ପାଦନ କେନ୍ଦ୍ର ଥିଲା । ଜେଲର ଅପରିଷ୍କାର ବାତାବରଣ ଯୋଗୁଁ ମଶା ମାଛିଙ୍କ ଭଣ୍ଡୁଭଣ୍ଡୁ ଶବ୍ଦ ବାରମ୍ବାର ଶୁଣାଯାଉଥିଲା । ସେଲ ଭିତର ନିୟମିତ ସଫା କରା ଯାଉନଥିଲା । ଯାହା ଫଳରେ ବନ୍ଦୀମାନଙ୍କ ସର୍ବଦା ଜ୍ୱର, କୁଣ୍ଡିଆ [illegible] ଆଦି ରୋଗ ଜନିତ ଭୋଗୁଥିଲେ ।

କୋରାପୁଟ ଜେଲରେ ସଂଗ୍ରାମୀମାନେ [illegible] ବଞ୍ଚିଥିଲେ । ସେମାନଙ୍କ ପ୍ରତି [illegible] ପ୍ରଦର୍ଶନ କରାଯାଉଥିଲା । ସଂଗ୍ରାମୀ

ମାନଙ୍କୁ ଔଷଧପତ୍ର ମିଳିବା କଷ୍ଟକର ବ୍ୟାପାର ହୋଇଥିଲା । ଚିକିତ୍ସା ଅଭାବରୁ ସତ୍ୟାଗ୍ରହରେ ପ୍ରାପ୍ତ ଦୁଇଜଣ କଏଦୀଙ୍କୁ ମୃତ୍ୟୁ ବରଣ କରିବାକୁ ପଡ଼ିଥିଲା ।

ବ୍ୟକ୍ତିଗତ ସତ୍ୟାଗ୍ରହ ସମୟରେ କୋରାପୁଟ ଜେଲରେ ସଂଗ୍ରାମୀ ଡମ୍ବରୁ ଚାଲିଆ ଓ ସଦାଶିବ ବେହେରାଙ୍କ ମୃତ୍ୟୁ ହୋଇଥିଲା । ସଂଗ୍ରାମୀ ଦ୍ୱୟ ରୋଗରେ ଆକ୍ରାନ୍ତ ହେବାପରେ ଉଚିତ ଚିକିତ୍ସା ପାଇନଥିଲେ । ଯାହାଫଳରେ ଦୁଇ ଜଣଙ୍କୁ ଶହୀଦ ହେବାକୁ ପଡ଼ିଥିଲା ।

କୋରାପୁଟ ଜେଲରେ ନାଣ୍ଡିଲା ଗୁଳିକାଣ୍ଡରେ ଆହତ ସଂଗ୍ରାମୀ ଅତି ଦୟନୀୟ ଅବସ୍ଥାରେ ଥିଲେ । ସେମାନଙ୍କ ଦୁଇ ଗୋଡ଼ରେ ଲୁହା ବଳା ପିନ୍ଧାଇଦିଆ ଯାଇଥିଲା । ସେହି ବଳା ଦୁଇଟିକୁ ଯୋଡ଼ି ଗୋଟିଏ ଦେଢ଼ଫୁଟ ଲମ୍ବାର ଲୁହା ଛଡ଼ ଲଗାଇ ଦିଆଯାଇଥିଲା । ସେହି ଦୁଇ ଗୋଡ଼ର ବଳାରୁ ପୁଣି ଦୁଇଟି ଲୁହାଛଡ଼ ୨ଫୁଟ ଲମ୍ବାର ବାହାରିଥିଲା । ସେହି ଛଡ଼ ଦୁଇଟିର ଅପରପାର୍ଶ୍ୱରେ ବଳା ଲାଗିଥିଲା । ବନ୍ଦୀ ତାକୁ ଦୁଇ ହାତରେ ଧରି ଚାଲିବ ନଚେତ ତା'ଉପରର ଗାମୁଛାକୁ ବଳାଉପର ଗଳାଇ ଅଣ୍ଟାରେ ବାନ୍ଧିବ । ଏହାକୁ ଦଣ୍ଡାବେଡ଼ି କୁହାଯାଉଥିଲା । ଚାଲିବା ସମୟରେ ବେଶ ଅସୁବିଧା ହେଉଥିଲା । ଗୁଳିକାଣ୍ଡରେ କ୍ଷତବିକ୍ଷତ ହୋଇ ସେମାନେ ବହୁ କଷ୍ଟରେ ଦଣ୍ଡାବେଡ଼ି ଭୋଗ କରୁଥିଲେ । କ୍ଷତ ସ୍ଥାନ ଗୁଡ଼ିକ ପାଚିଯାଇ ସେଥିରେ ପୋକ ମଧ୍ୟ ହୋଇଯାଇଥିଲା । ତାହାର ଚିକିତ୍ସା ଅଭାବରୁ କେତେକଙ୍କୁ ମରିବାକୁ ପଡ଼ିଥିଲା ।

ଯଦି କେହି ଉଚ୍ଚ କର୍ତ୍ତୃପକ୍ଷ ଜେଲ ପରିଦର୍ଶନରେ ଆସନ୍ତି ସେତେବେଳେ କାନ୍ଥକୁଣ୍ଡିଆ ରକ୍ତ ରୋଗରେ ଆକ୍ରାନ୍ତ ବନ୍ଦୀମାନଙ୍କୁ ଗୋଟିଏ ସେଲରେ ଭରିଦିଆ ଯାଉଥିଲା । ପରିଦର୍ଶକଙ୍କୁ ଉକ୍ତ ସେଲରେ ବସନ୍ତ ରୋଗୀ ଓ ପାଗଳ ବନ୍ଦୀମାନେ ରହିଥିବା କୁହାଯାଉଥିଲା । ଅନ୍ୟ କେତେକ ରୋଗୀ ବନ୍ଦୀଙ୍କୁ ପାଇଖାନାରେ ଭର୍ତ୍ତିକରି କବାଟବନ୍ଦ କରାଯାଉଥିଲା । ଶୀତଦିନେ ବନ୍ଦୀ ବିବସ୍ତ୍ର ଅବସ୍ଥାରେ ରହିବାକୁ ବାଧ୍ୟ ହେଉଥିଲେ । ସେହି ସମୟରେ କୋରା-

ପୃଷ୍ଠରେ ଭଳକ ଥଣ୍ଡା ହେଉଥିଲା । କିନ୍ତୁ ବନ୍ଦୀମାନଙ୍କୁ ଗୋଟିଏ କୁଠରୀରେ ଥଣ୍ଡା ସମ୍ଭାଳିବା କଷ୍ଟ ହେଉଥିଲା ।

ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କୁ 'ଏ' ଶ୍ରେଣୀ ବନ୍ଦୀ ଭାବେ କଟକରୁ କୋରାପୁଟ ଜେଲକୁ ସ୍ଥାନାନ୍ତରିତ କରାଗଲା । ସେ ଯିବାରୁ ସଂଗ୍ରାମୀମାନେ ଜେଲ କର୍ତ୍ତୃପକ୍ଷଙ୍କ ମନୋଭାବରେ କିଛିଟା ପରିବର୍ତ୍ତନ ହେବ ବୋଲି ଆଶା କରିଥିଲେ । କିନ୍ତୁ ସେ ଆଶା ଆଶାରେ ମଉଳି ଯାଇଥିଲା । ସେହି ସମୟକୁ କୃଷ୍ଣମଣି ଦାସ ନୂଆ ଜେଲର ଭାବେ ଆସିଥାନ୍ତି । ସେ 'ଡି' ଶ୍ରେଣୀ ବନ୍ଦୀମାନଙ୍କ ପାଇଁ ସରୁ ଚାଉଳ ବଦଳରେ ମୋଟା ଚାଉଳ ଚଳାଇବା ଆରମ୍ଭ କଲେ । ଏହାର ପ୍ରତିବାଦରେ ସଂଗ୍ରାମୀମାନେ ଆମରଣ ଅନଶନ କରିବାକୁ ନିଷ୍ପତ୍ତି ନେଲେ । କିନ୍ତୁ ଲକ୍ଷ୍ମୀଚନ୍ଦ୍ର ଦାସଙ୍କ ଆମରଣ ଅନଶନ ଦ୍ୱାରା ଜେଲ କର୍ତ୍ତୃପକ୍ଷ ମତକୁ ପରିବର୍ତ୍ତନ କରିହେବ ବୋଲି ବିଶ୍ୱାସ ନଥିଲା । ତେଣୁ ତାଙ୍କ ମରିବା ସାର ହେବ ବୋଲି କହି ଆମରଣ ଅନଶନ ନକରିବାକୁ ଲକ୍ଷ୍ମୀଚନ୍ଦ୍ର ଦାସ କହିଥିଲେ ଏବଂ ମୋଟା ଚାଉଳ ଫେରାଇବାକୁ ସଂଗ୍ରାମୀମାନଙ୍କୁ ଆହ୍ୱାନ ଦେଲେ । ସେହି ଅନୁସାରେ ସଂଗ୍ରାମୀମାନେ ମାସ ମାସ ଧରି ମୋଟା ଚାଉଳକୁ ରନ୍ଧାଭାତ ଫେରାଇଥିଲେ । ସକାଳେ ରୁଟି ଓ ସନ୍ଧ୍ୟାରେ ଖାଲି ତରକାରୀ ଶାଗ ଖାଇ ସଂଗ୍ରାମୀମାନେ ଜେଲରଙ୍କ କାର୍ଯ୍ୟର ପ୍ରତିବାଦ ଜଣାଇଥିଲେ । ତା'ପରେ ସଂଗ୍ରାମୀଙ୍କୁ ବାଧ୍ୟ ହୋଇ ଜେଲ କର୍ତ୍ତୃପକ୍ଷ ସରୁଚାଉଳରେ ରନ୍ଧାଭାତ ଦେବାକୁ ବାଧ୍ୟ ହୋଇଥିଲେ ।

କୋରାପୁଟ ଜେଲରେ ଥରେ ବାଲେଶ୍ୱର ଜିଲ୍ଲାର କଂଗ୍ରେସ କର୍ମୀ ସନାତନ ଓ ଓଡ଼ାଗାଁର ସନ୍ନୁ ମାଝିଙ୍କୁ ଜେଲ କର୍ତ୍ତୃପକ୍ଷଙ୍କ ବ୍ୟଙ୍ଗ ବଦ୍ରୁପର ଶୀକାର ହେବାକୁ ପଡ଼ିଥିଲା । ଜେଲର ଯିବା ସମୟରେ ସେହି ଦୁଇ ଜଣ ସଂଗ୍ରାମୀ ଠିଆ ହୋଇ ଦଣ୍ଡବତ ଜଣାଇନଥିଲେ । ଏହା ହିଁ ଥିଲା ସେମାନଙ୍କ ଦୋଷ । ସେହି ଦୁଇଜଣ ସଂଗ୍ରାମୀଙ୍କୁ ହାତକୋଡ଼ି ପକାଇ ଆଣାଗଲା ସନ୍ନୁ ମାଝିଙ୍କ ମୁଣ୍ଡର ବାଳକାଟି ଲଣ୍ଡାକରି ଦିଆଗଲା । ସନାତନଙ୍କୁ ଲଣ୍ଡା କରିବାକୁ ଉଦ୍ୟମ ହେବାରୁ ସେ ମୁଣ୍ଡ ନଇଁଡ଼ାଇ ପ୍ରତିରୋଧ କଲେ । ଦୁଇ

ଜଣଙ୍କୁ ନେଇ କୁଷ୍ଠ ରୋଗୀ ଓ ପାଗଳଥିବା ସେଲରେ ଭର୍ତ୍ତି କରାଗଲା । ଏହି ଘଟଣାର ପ୍ରତିବାଦରେ ସଂଗ୍ରାମୀମାନେ ଏକଦିନିଆ ଉପବାସ କରିବାକୁ ନିଷ୍ପତ୍ତି ନେଇଥିଲେ । କୋରାପୁଟିଆ ସଂଗ୍ରାମୀମାନେ ସେମାନଙ୍କ ସାଥୀ ଉପରେ ହୋଇଥିବା ଅନ୍ୟାୟର ପ୍ରତିବାଦ କରିଥିଲେ । ଉପବାସ ରହିଥିଲେ ।

କୋରାପୁଟ ଜିଲ୍ଲା ଜେଲରେ ଆବଶ୍ୟକ ଚିକିତ୍ସା ଅଭାବରୁ ଶହୀଦ ହୋଇଥିବା କୋରାପୁଟିଆ ସଂଗ୍ରାମୀ—

| ନାମ | ଗ୍ରାମ | ଥାନା |
|---|---|---|
| ସଦାଶିବ ବେହେରା | ଜୟପୁର | ଜୟପୁର |
| ଡମ୍ବୁରୁ ଚଲଆ | ଜୟପୁର | ” |
| ଗୋପିନାଥ ପୂଜାରୀ | ସାନଗୁମ୍ମା | ମାଥିଲି |
| ଭଣ୍ଡ୍ରେ ସୁନା ଦରୁଆ | କଆଙ୍ଗ | ” |
| ଗୁରୁ କୋହିଆ | ଟିମରପୁଟ | ” |
| ଜଗନ୍ନାଥ ଓଡ଼ | ବୈଶାଖୁଘାଟ | ” |
| ବଳରାମ ଭୂମିଆ | ହେମୁରୁଖାଲି | ” |
| ମଙ୍ଗଳା ମାଡ଼କାମୀ | ସରଗିଗୁଡ଼ା | ” |
| ସୋମନାଥ ଭୂମିଆ | ଉଦୟଗିରି | ” |
| ଚନ୍ଦ୍ର ବାଙ୍କା | ମାଛଗଗଡ଼ା | ” |
| ବାମା ପୂଜାରୀ | ଚନ୍ଦଣକୁଡ଼ା | ” |
| ଶୁକ୍ରୁ ଗୋଛେ | ଖାଣ୍ଡିକଗୁଡ଼ା | ” |
| ଗୋବିନ୍ଦ କଡ଼େ | ଗାଲୁଡା | ” |
| ସମ୍ବାରୁ ନାୟକ | ପିଟାଚଙ୍ଗ | ” |
| ଅର୍ଜୁନ ଭୂମିଆ | ସାନଗୁମ୍ମା | ” |
| ନରସିଂହ ଡମ୍ବ | ଲଲୁଗାଁ | ” |
| ଚୈତନ୍ୟ ପୂଜାରୀ | ଡାଙ୍ଗଲିଗୁଡ଼ା | ” |

| | | |
|---|---|---|
| ଲକ୍ଷ୍ମଣ ସମରଥ | ସାରଡଗାଲ | ମାହେକ |
| ଭକ୍ତ କର | ଦବାଗୁଡ଼ା | ଚାଣ୍ଡୁଆ |
| ଡମ୍ବୁରୁ କିଶା | ମାଲେଗାଁ | ,, |
| ଭଗବାନ କର | କନ୍ଦପଡ଼ା | ,, |
| ଅଦୁ ତଳସା | ଚଢ଼ିହାଁ | ,, |
| ସମର ମାଝୀ | ସିଦ୍ଧିବୁଟ | ,, |
| ଲମ୍ବର ଧନୁର୍ଜୟ | ସାକୁଲୁ | ,, |
| ଜଟଳା ଟଦାର | ଗଞ୍ଚାଡ଼ି | ଗଞ୍ଚାଡ଼ି |
| ଭଗବାନ ଝିଲ | କାଗ୍ରା | ଜୟପୁର |
| ଖଗେନ୍ଦ୍ର ପୂଜାରୀ | ଫଟ୍ଟସଲ | ବୋରିଗୁମ୍ମା |
| ଦଶ ପ୍ରମନାଗ୍ୟ | କାମଟିକୋଟ | ନବରଙ୍ଗପୁର |
| ଲାବଣ୍ୟ ଭତରା | ସନକୁମୁଲି | ନବରଙ୍ଗପୁର |
| ରଘୁନାଥ ଭନ୍ତାରା | ଭୁରୁଞ୍ଜି | ଚେନ୍ତୁଳଖଣ୍ଡି |
| ଖଗେଶ୍ୱର ମାଝୀ | ଡାମ୍ବଗୁଡ଼ା | ମଇଦଲପୁର |
| ଡାକଟି ଭତରା | ଗୋପିଗୁଡ଼ା | ମଇଦଲପୁର |
| ଧବ କଲର | ଗୋପିଗୁଡ଼ା | ମଇଦଲପୁର |
| ବଣ୍ଡୁକା ଭତରା | ଏକସା | ମଇଦଲପୁର |
| ମାଧବ ମାଝୀ | ମାଟିଗୁଡ଼ା | ମଇଦଲପୁର |
| ଗଙ୍ଗାଧର ମୁଦୁଲି | ପିଲବାଟିମା | ଚେନ୍ତୁଳଖଣ୍ଡି |
| କାଙ୍ଗିଆ ମାଝୀ | ମାଝିଆଗୁଡ଼ା | ଡାବୁଗାଁ |
| ଡଗୁ ମାଝୀ | ଚେଟଟିଆମ୍ବ | ଡାବୁଗାଁ |
| ବନମାଳୀ ହରିଜନ | ଘାଟୀ | ଡାବୁଗାଁ |
| ବଗା ପୂଜାରୀ | ଭଟଣ୍ଡି | ଉମରକୋଟ |
| ଲକ୍ଷନ ଭତ୍ରା | କୁହୁମୀ | ଚେନ୍ତୁଳଖଣ୍ଡି |

ନବରଙ୍ଗପୁର ସବ-ଜେଲରେ ମୃତ୍ୟୁ ବରଣ କରି ଶହୀଦ ହୋଇଥିବା ସଂଗ୍ରାମୀ—

| | | |
|---|---|---|
| ଜଡ଼ ଜଗର | ଗୋପିଗୁଡା | ନବରଙ୍ଗପୁର |
| ସୁକମନ ଭତ୍ରା | ” | ” |
| ପର୍ଶୁରାମ ମାଝି | ଚଢ଼ ପୁର | ” |
| ଲଭଟନ ଭତ୍ରା | ନୂଆଗୁଡା | ନବରଙ୍ଗପୁର |
| ଗେରୁ ପାଇକ | ଗୋପିଗୁଡା | ” |
| ଓମ୍ବୁରୁ ମାଝୀ | ବଣ୍ଡୁଗୁଡା | ଜୋଡ଼ାମା |
| ଘାସିଆ ନେତ୍ର | ” | ” |

କୋରାପୁଟ ଜେଲରୁ ଖୋଲସ ହୋଇ ଆସୁଥିବା ବେଳେ ବାଟରେ ମୃତ୍ୟୁବରି ଶହୀଦ ହୋଇଥିବା ସଂଗ୍ରାମୀ—

| | | |
|---|---|---|
| ମୁଢ଼ିଆ ଭତ୍ରା | କଷାଗୁମୁଣ୍ଡା | ଜେ ଡ଼ଙ୍ଗା |
| ଭାଳିଆ ନେଟଗଣା ଭାନ | ନେଉଟିଆମ | ଡାବୁଗାଁ |
| ସଦାଶିବ ଭତ୍ରା | ମଝାଗାଁ | ଚେନୁକଣ୍ଡି |

୧୯ ଜାନୁଆରୀ ୧୯୪୬ରେ ଦୈନିକ 'ନ୍ୟୁ ଓଡ଼ିଶା' କୋରାପୁଟ ଜେଲ ସମ୍ପର୍କରେ 'Grusome Story of Belson of Orissa' ଶୀର୍ଷକରେ ଲେଖିଥିଲେ—

'Humanity stood aghast when the terrible Story of Belson concentration camp in Germany was revealed. The Nazis were brutes and Belson was a revealation of their beastial nature

But what of those who fought the Nazis and Nazism? what of those who claim themeselves to be civilised

people ? Here in Orissa, a British province in a Jail in Koraput 50 Political prisioners died a lingering death. their lives were dedicated for the cause of Independence. They were soldiers of freedom, who braved death every minute of their sacred lives. They lived to make the world worth living And a malaciously vindictive system killed them in bondage."

(ଯେତେବେଳେ ଜର୍ମାନୀର ବେଲସନ କନସନଟ୍ରେସନ ଶୀବିରର ଭୟାବହ ଘଟଣା ଲୋକଲୋଚନକୁ ଆସିଥିଲା ସେତେବେଳେ ମାନବ ସମାଜ ସ୍ତମ୍ଭିତ ହୋଇ ଯାଇଥିଲା । ନାଜିମାନେ ରାକ୍ଷସ ଏବଂ ବେଲସେନ ସେମାନଙ୍କ ରାକ୍ଷସ ପ୍ରକୃତିର ଏକ ପ୍ରକଟନ ।)

କିନ୍ତୁ ଯେଉଁମାନେ ନାଜି ଓ ନାଜିବାଦର ନିନ୍ଦାରେ ଲିପ୍ତ ରହିଥିଲେ ସେମାନେ କିଏ ? ଯେଉଁମାନେ ନିଜକୁ ସଭ୍ୟଜାତି ବୋଲି ଦାବି କରୁଛନ୍ତି ସେମାନେ କେଉଁ ପ୍ରକାରର ? ବ୍ରିଟିଶର ଏକ ପ୍ରଦେଶ ଓଡ଼ିଶାର କୋରାପୁଟ ଜେଲରେ ୫୦ ଜଣ ରାଜନୈତିକ ବନ୍ଦୀଙ୍କ ଅକାଳ ମୃତ୍ୟୁ ଘଟିଛି । ସେମାନଙ୍କ ଜୀବନ ସ୍ୱାଧୀନତା ପାଇଁ ଉତ୍ସର୍ଗୀକୃତ ହୋଇଛି । ସେମାନେ ଥିଲେ ସ୍ୱାଧୀନତାର ସୈନିକ, ଯେଉଁମାନଙ୍କ ପବିତ୍ର ଜୀବନର ପ୍ରତି ମୁହୂର୍ତ୍ତ ଅତି ସାହାସର ସହ ମୃତ୍ୟୁର ସମ୍ମୁଖୀନ ହୋଇ ରହିଥିଲା । ଏ ବିଶ୍ୱକୁ ବଞ୍ଚିବା ଯୋଗ୍ୟ କରିବାକୁ ସେମାନେ ବଞ୍ଚିରହିଥିଲେ ଏବଂ ଏକ ଈର୍ଷା ପ୍ରଣୋଦିତ ପ୍ରତିହିଂସା ପରାୟଣର ବ୍ୟବସ୍ଥା ସେମାନଙ୍କୁ ବନ୍ଦିନାବସ୍ଥାରେ ହତ୍ୟାକଲା ।)



ଅଗଷ୍ଟ ବିପ୍ଳବ ପୂର୍ବରୁ ହିଁ କଂଗ୍ରେସ କୋରାପୁଟ ଜିଲ୍ଲାର ଜମିଦାର, ପୋଲିସ ଓ ଅନ୍ୟାନ୍ୟ କର୍ମଚାରୀଙ୍କ ଅନ୍ୟାୟ, ଅତ୍ୟାଚାରର ପ୍ରତିରୋଧ ଓ ପ୍ରତିବାଦ କରି ଆସିଥିଲା । ଏହା ସମ୍ପୃକ୍ତ କର୍ମଚାରୀମାନଙ୍କୁ ମୁଣ୍ଡବ୍ୟଥା କରୁଥିଲା । ସେମାନଙ୍କ ବାଘୁଟଣିଆ ବ୍ୟବହାର ତାହାର ଜନ୍ମକାଳରୁ ବାଧା ସୃଷ୍ଟି କରିଥିଲା । ତେଣୁ ସେମାନଙ୍କ କ୍ରୋଧ ଓ ଅହଂକାର କଂଗ୍ରେସ ଉପରେ ରହିଥିଲା । ଅଗଷ୍ଟ ମାସରେ ଆଇନ ଅମାନ୍ୟ ଜଣ କଂଗ୍ରେସର ମୁଖ୍ୟ କର୍ମୀମାନେ ଗିରଫ ହୋଇଯିବା ପରେ ସେମାନଙ୍କ ପ୍ରତିଶୋଧ ପ୍ରବୃତ୍ତି ପୂର୍ଣ୍ଣ ରୂପେ ପ୍ରକାଶିତ ହୋଇଥିଲା ।

ଜୟପୁର ଜମିଦାରଙ୍କ କର୍ମଚାରୀଙ୍କ ଅତ୍ୟାଚାର ସବୁଠୁ ବଳି ପଡ଼ିଥିଲା । ସେମାନେ ବ୍ରିଟିଶ ସରକାରଙ୍କ ଦାନ୍ତ ଘୁଷୁରି ଭଳି ଲୋକଙ୍କ ଧନଜୀବନ ସହ ଖେଳିବାକୁ ଲାଗିଲେ । ଅନ୍ୟାୟ, ଅତ୍ୟାଚାର, ଲୁଟ ଦମନର ସୀମା ଟପିଗଲା । ଜମିଦାରୀର ଗଣ୍ଡା, ନାଏକ, ଚଲଣ, ଇନାମଦାର ପ୍ରଭୃତି ଜଙ୍ଗଲ ଓ ରାଜସ୍ୱ କର୍ମଚାରୀଙ୍କ ସହ ମିଶି କୋରାପୁଟିଆଙ୍କୁ ଶୋଷଣ କଲେ । କଂଗ୍ରେସ ଲୋକଙ୍କୁ ପ୍ରଥମେ ସେମାନଙ୍କ ହିଂସ୍ର କାର୍ଯ୍ୟର ଶିକାର ହେବାକୁ ପଡ଼ିଥିଲା ଏହାର ବିଷଦ ବିବରଣୀ କୋରାପୁଟିଆର ସ୍ୱରାଜ ସଂଗ୍ରାମ ଇତିହାସର ଏକ ମୁଖ୍ୟ ଅଧ୍ୟାୟ—

ମାଥିଲି— ମାଥିଲି ପୋଲିସ ଷ୍ଟେସନ ଅନ୍ତର୍ଗତ କେମିଗୁଡ଼ା ଗ୍ରାମ । କେଶବ ପାତ୍ର ଏହି ଅଞ୍ଚଳର ମୁଖିଆ ଲୋକ । ସେ ଜୟପୁର ଜମିଦାରୀ ଓ ପୋଲିସ

ଆଣ୍ଟାରେ ବନ୍ଧୁକ ସଜାଇକରି ଅନ୍ୟାୟ, ଅତ୍ୟାଚାର ଅନାଦିଧା ଓ ଉପଦ୍ରବ କରି ଚାଲିଥିଲେ । ୧୫-୮-୪୨ ତାରିଖ ଦିନ କେଶବ ପାଢ଼ୀ ନଅର ଶହେ ଜଣ ଅନୁଚର ସହ ଲକ୍ଷ୍ମଣ ଦଳାଇ ନାମକ ଜଣେ କଂଗ୍ରେସ କର୍ମୀଙ୍କ ଘରେ ପ୍ରବେଶ କରି ତାଙ୍କର ସମସ୍ତ ଜିନିଷପତ୍ର ଲୁଟି ନେଇଥିଲେ । ଅନୁଚର ଦଳରେ ବହୁ [illegible] ଡକାୟତ ମଧ୍ୟ ରହିଥିଲେ । ଲକ୍ଷ୍ମଣ ଦଳାଇଙ୍କୁ ଗିରଫ କରି ଜେଲରେ ନେଇଯିବା ପରେ କେଶବ ପାଢ଼ୀ ତାଙ୍କର ସ୍ତ୍ରୀ ଲୋକଙ୍କୁ ଟାଣିଓଟାରି ଅତ୍ୟାଚାର କଲେ । ଟଙ୍କା ଦାବୀ କଲେ । ଏହି ଗ୍ରାମର ଜଗନ୍ନାଥ ଗିରି ନାମକ ଆଉ ଜଣେ ମୁଖିଆ ଲକ୍ଷ୍ମଣ ଦଳାଇଙ୍କ ପିତା ଅନନ୍ତ ଦଳାଇଙ୍କୁ ଚମଡ଼ା ଦଉଡ଼ିରେ ବାନ୍ଧି ପକାଇ କଂଗ୍ରେସ ଛାଡ଼ିବାକୁ ଧମକ ଦେଇଥିଲେ । କିନ୍ତୁ ଜୀବନ ଥିବା ପର୍ଯ୍ୟନ୍ତ କଂଗ୍ରେସ ଛାଡ଼ିବି ନାହିଁ ବୋଲି ଅନନ୍ତ ଦଳାଇ ନିର୍ଭୟରେ ଜବାବ ଦେଇଥିଲେ । ତାଙ୍କୁ ଥାନାକୁ ନିଆଯାଇ ପରେ ଛାଡ଼ିଦିଆଗଲା ଘରକୁ ଫେରିବାପରେ ମୁଖିଆ ତାଙ୍କୁ ନିର୍ମମ ମାଡ଼ ଦେଇଥିଲେ । ତାଙ୍କର ହାତ ଭାଙ୍ଗି ଯାଇଥିଲା । ତାଙ୍କ ଘରେ ଥିବା ଗାଈଗୋରୁ, ଫସଲ ଜବରଦସ୍ତ ନିଆଯାଇଥିଲା ।

ମନ୍ଧୀପୁର ଗ୍ରାମର କଂଗ୍ରେସ କର୍ମୀ ଗୋପିନାଥ ମାଳି, ଅଭିଂଠ ମାଳି, ଚନ୍ଦନ ମାଳି, କନକ ମାଳି, ଖୁଦ୍ଦୁର ବୋଉ, ବୁଦୁର, ଲଗ, ଗୁରୁ, ଶୁକା ଦଳାଇ ପ୍ରଭୃତିଙ୍କ ଘର କେଶବ ପାଢ଼ୀ ଲୁଟିକରି ସମସ୍ତ ଜିନିଷପତ୍ର ନେଇ ଯାଇଥିଲେ । ସେ ନେଉଳସିମୁଳ ଗ୍ରାମର ପୁନ୍ଦା କରସଙ୍ଗ ନାମକ ଜଣେ କଂଗ୍ରେସ କର୍ମୀର ଘର ଭାଙ୍ଗି ଦେଇଥିଲେ । ହଳ ବଳଦ, ଧାନ ଓ ଟଙ୍କା ମଧ୍ୟ ଲୁଟିନେଇ ଥିଲେ । ଡାଣ୍ଡି ଖାଲଗାଁରେ ଥିବା କଂଗ୍ରେସ ଅଫିସକୁ ଜଗନ୍ନାଥ ଗାଲର ନାମକ ଜଣେ ମୁଖିଆ ଲୋକଙ୍କ ସହ ନିଆଁ ଲଗାଇ ଉଡ଼ାଇଦେଇଥିଲେ । ଏହି ପାଢ଼ୀ ପୋଲିସ ସହାୟତାରେ ତିଳକପୁରର ଚନ୍ଦନ ଦଳାଇ, ନୃସିଂହପୁରର ସମାପ୍ତ ଦେବୀ ଖରସାହଡର ବଣ୍ଡା ଖିଲ, ଅଲକାପଡାର ସାଧୁ ଓ ପ୍ରଭୃତି କଂଗ୍ରେସ ସମର୍ଥକ ଓ କର୍ମୀଠାରୁ ବହୁ ଧନସମ୍ପତ୍ତି ଲୁଟ କରିଥିଲେ । ସେମାନଙ୍କୁ ମାଡ଼ ଖାଇବାକୁ ପଡ଼ିଥିଲା ।

ରତନପୁର ଗ୍ରାମର ମଙ୍ଗଳା ଦଳାଇ ନାମକ କଂଗ୍ରେସ କର୍ମୀଙ୍କୁ ଗିରଫ କରାଯାଇ ଜେଲକୁ ପଠାଯାଇଥିଲା । ଏହାର ସୁଯୋଗନେଇ କେଶବ

ଘାସ ବନ୍ଦାଲଙ୍କ ଘର ସମସ୍ତ ଜନବଳେ ନେଇଯାଇଥିଲେ । ସାବାଫଳରେ ତାଙ୍କ ପରିବାର ଲୋକେ ଖାଇବାକୁ ମଧ୍ୟ କଷ୍ଟ ପାଉଥିଲେ । ତାଙ୍କ ଜମିର ଫସଲକୁ ଲୁଟକାରମାନେ ଜବରଦସ୍ତ କାଟି ନେଇଥିଲେ ।

ବାଙ୍ଗୁରିପଡ଼ାରେ ଗ୍ରାମ ମୁଖିଆ ପୋଲିସକୁ ଡକାଇ ପ୍ରତ୍ୟେକ ଗ୍ରାମବାସୀଙ୍କ ଘରେ ପଶି ଧନସମ୍ପତ୍ତି ଲୁଟିଥିଲେ । ଲୋକଙ୍କୁ ମାଡ଼ଦେଇ ମାରିଲା ଥାନାକୁ ନିଆଯାଇଥି ।

ଥାପାଗୁଡ଼ାର ସାରସିଂ ନାୟକ, ଅଟଳଗୁଡ଼ାର ଭଗବାନ କଟିଆ ଗୁରୁ କଟିଆ, ସକଆ ଲକ୍ଷ୍ମୀଧର, ସୁନାଧର ବୃଜାଗ୍ନି, ନରସିଂହ କଟିଆ ଓ ହରି କଟିଆ; ବାଲୁବେଡ଼ାର ସନ୍ୟାସୀ ଭୂମିଆ, କଣ୍ଡାନପାଲିର ଗୁରୁ ଭୂମିଆ ନେଲଗୁଣ୍ଡିର ରଘୁନାଥ ବୃଜାଗ୍ନି, ସରଗିଗୁଡ଼ାର ହରି ମାଝୀ, ଅବଙ୍ଗିର ଦାସା ପରଜୀ, ଟେଙ୍ଗାବେଡ଼ାର ସମାରୁ ଧୁରୁବ, ଟିମସପୁଟର ବୁଧା ଦେଶୀ, ଦଂଶିଆ-ଘାଟର ଲକ୍ଷ୍ମଣ ବୃଜାଗ୍ନି; ଷାଲିମର ମୁଣ୍ଡରୀ ପ୍ରଭୃତି ଲୋକଙ୍କଠାରୁ ଟଙ୍କା ଆଦାୟ କରାଯାଇଥିଲା । କେତେକଙ୍କ ଖଦଡ଼ଲୁଗା ପୋଡ଼ିଦିଆ ଯାଇଥିଲା । ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ପୋଲିସ ଓ ସରକାରୀ କର୍ମଚାରୀଙ୍କ ମାଡ଼ ଖାଇବାକୁ ପଡ଼ିଥିଲା ।

ଜୟପୁର ଜମିଦାରଙ୍କ ରାଜ୍ ନାମକ ଜଣେ ଫରେଷ୍ଟ ରେଞ୍ଜର ଫରେଷ୍ଟ ଗାର୍ଡଙ୍କ ସହ ଉଦାମପାଂଗୀ ଗ୍ରାମକୁ ଯାଇ ଗ୍ରାମବାସୀଙ୍କ ଗୋରୁ ଗାଈ ଜିନିଷପତ୍ର ନେଇଯାଇଥିଲେ । ସେମାନେ ସମୁଦାୟ ୧୯ଟି ଗ୍ରାମରେ ଲୁଟତରାଜ ଚଳାଇଥିଲେ ।

ନନ୍ଦପୁର-ପାଡ଼ୁଆ— ବାଡ଼ ଗ୍ରାମରେ ଶ୍ୟାମଚନ୍ଦ୍ର ମାଳି ନାମକ ଜଣେ କଂଗ୍ରେସ କର୍ମୀଙ୍କୁ ପୋଲିସ ଓ ବ୍ୟକ୍ତିମାନଙ୍କ ଦ୍ୱାରା ନିର୍ମମ ଭାବେ ମାଡ଼ ଦିଆଯାଇଥିଲା । ତାଙ୍କଠାରୁ ୫୫ ଟଙ୍କା ଆଦାୟ କରାଗଲା । ପାଲବା ପରଜା ନାମକ ଅନ୍ୟଜଣେ ଲୋକଙ୍କ ଠାରୁ ପୋଲିସ ୬୦ ଟଙ୍କା ଆଦାୟ କରି ତିନ ମାସ ଜେଲରେ ରଖିଥିଲେ ।

ଶଙ୍କରପୁରର ମୁଖିଆ ଓ ତାଙ୍କ ଗୋଷ୍ଠି ଚଣ୍ଡାଳ ହରିଜନଙ୍କ ଜମିର ଫସଲକୁ କାଟିନେଇ ଯାଉଥିଲେ । ତାଙ୍କର ବହୁ ଧନ ଜବରଦସ୍ତ ଛଡ଼ାଇ ନିଆଯାଇଥିଲା । ଗଡ଼ନେଲୁ ଗ୍ରାମର ସାଧୁ ଖଡ଼ା, ଅନନ୍ତ ଶିଶା, ବୁଡ଼ା ଝିଣ; କାଳିହୁଡ଼ାର ଯାଦବ ନାୟକ; କଞ୍ଚନାର ଅଲଗା ମୃଦୁଳି, ପିପିଲିପୁରର ଜଗବନ୍ଧୁ ଗନ୍ଧର୍ବଙ୍କ ପରି ବହୁ କମିଦାଶ ଲୋକଙ୍କ ନାନା ଜିନିଷ ଲୁଟିନେଇଥିଲେ ।

କଲାରଗୁଡ଼ାର ମଙ୍ଗଳ ଶିଶାଙ୍କୁ ୩ବର୍ଷ କାରାଦଣ୍ଡ ହୋଇଥିଲା । ଉକ୍ତ କଂଗ୍ରେସ କର୍ମୀଙ୍କ ଜମିକୁ ମୁଖିଆ କେଶବ ପାତ୍ର ଦଖଲ କରି ନେଇଥିଲେ । ତାଙ୍କର ଜ୍ୟେଷ୍ଠ ପୁତ୍ର ଓ ମା'କୁ ମାଡ଼ ମାରିବା ଯୋଗୁଁ ସେମାନେ ଗୁରୁତର ଭାବେ ଆହତ ହୋଇଥିଲେ । କିଛି ଦିନ ପରେ ସେମାନଙ୍କ ମୃତ୍ୟୁ ହୋଇଯାଇଥିଲା ।

ଚଟାପୁଟ ଓ ବଙ୍କା ଗ୍ରାମବାସୀଙ୍କୁ ପୋଲିସ ନିର୍ମମ ଲାଠି ପ୍ରହାର କରି ଟଙ୍କା ଆଦାୟ କରିଥିଲେ । ସେମାନେ; ଅଣ୍ଡପୁର, ନେଲଗାଁ, ସିସାପୁଟ ମାଛପୁଟ, ଭିତରସ୍ୱାଇଁ, ଦଳାଇଗୁଡ଼ା; ଗୁମଡାପୁଟ ଗ୍ରାମରେ ପୋଲିସ ସବ୍-ଇନସପେକ୍ଟର କଣ୍ଡୁଲ ରାଓ ବହୁ ଟଙ୍କା ଜୋରିମାନା ଆଦାୟ କରିଥିଲେ । ଘାଟିଗୁଡ଼ାର କେଶବ ନାୟକ, ଦାସ ନେଇ; ଥକାଲର ପାଣି ଦିସା, କଂଗ୍ରେସ କର୍ମୀଙ୍କଠାରୁ ପୋଲିସ ଓ ରାଜକର୍ମଚାରୀ ଟଙ୍କା ଆଦାୟ କରି ନାନା ହଇରାଣ କରିଥିଲେ । ବାଙ୍କଲପିଙ୍ଗି ଗ୍ରାମରେ ପୋଲିସ ହେଡ୍ରୁ ଲାଠି ଚାଲନା କରାଯାଇଥିଲା । ଲାଠିମାଡ଼ରେ ପାଣ୍ଡୁ ପାଙ୍ଗିଙ୍କର ମୃତ୍ୟୁ ହୋଇଥିଲା ।

ବୈପାରିଗୁଡ଼ା— ୨୯-୯-୪୨ର ଘଟଣା । ଧଳାଗାଁକୁ ଜମିଦାର ରେଭେନ୍ୟୁ ଇନସ୍ପେକ୍ଟର ମଧୁସୂଦନ ସାହୁ, ପଟ୍ଟୁ ଦଳେଇ ଓ ଅନ୍ୟ ୪୦ ଜଣ ଚେଲାଙ୍କ ସହ ଗ୍ରାମରେ ପ୍ରବେଶ କରିଥିଲେ । ତାଙ୍କ ସହ ହାୱି ଓ ୪ ଜଣ ସଶସ୍ତ୍ର ପୋଲିସ ରହିଥିଲେ । ସେମାନେ ମୁସି ନାୟକ ନାମକ ଜଣେ ଚାଣ୍ଡୁଆ କଂଗ୍ରେସ କର୍ମୀଙ୍କୁ ଘରୁ ଟାଣି ଆଣିଥିଲେ । ତାଙ୍କୁ ନିର୍ମମ ଭାବେ ଲାଠିମାଡ଼ ଦିଆଗଲା । ତାଙ୍କଠାରୁ ୧୫ ଟଙ୍କା ଆଦାୟ କରିବାକୁ ଅମିନ ଅଫିସକୁ ନିଆଗଲା । ସେଠାରେ

ମଧ୍ୟ ତାଙ୍କୁ ମାଡ଼ ଦିଆଗଲା ଓ ସେ ପିନ୍ଧିଥିବା ଖଦଡ଼ ଓ ଗାନ୍ଧୀ ଟୋପି ଉତ୍ତାରି ଦିଆଯାଇଥିଲା ।

୧-୯-୪୨ ତାରିଖରେ ଖିଲଗୁଡ଼ାଠାରେ ଇନ୍ସ୍ପେକ୍ଟର କର୍ମଚାରୀମାନେ ଗ୍ରାମରେ ଉଡ଼ୁଥିବା ଜାତୀୟ ପତାକା ଭାଙ୍ଗି ଦେଇଥିଲେ । ଯେଉଁମାନଙ୍କ ଘରେ ପତାକା ଉଡ଼ୁଥିଲା ସେମାନଙ୍କଠାରୁ ପାଞ୍ଚ ଟଙ୍କା ଲେଖାଏଁ ଜରିମାନା ଆଦାୟ କରାଯାଇଥିଲା । ପଟଗୁଡ଼ା, କୁରୁକୁଟି, କମଗୁଡ଼ାର କଂଗ୍ରେସ କର୍ମୀଙ୍କ ଜିନିଷ ପତ୍ର ନିଆଯାଇ ଟଙ୍କା ଆଦାୟ କରାଯାଇଥିଲା ।

୨୯-୮-୪୨ ତାରିଖରେ ଗାଲିଆଗୁଡ଼ାରେ ଆର,ଆଇ ମଧୁସୂଦନ ସାହୁ ସଦଳବଳେ କଂଗ୍ରେସ କର୍ମୀମାନଙ୍କୁ ଗୋଟିଏ ସ୍ଥାନକୁ ଟାଣିଆଣିଥିଲେ । ସେମାନଙ୍କୁ ନିର୍ମମ ମାଡ଼ ଦିଆଯାଇଥିଲା । ମାଡ଼ଖାଇ ନନ୍ଦ କମାର ନାମକ ଜଣେ କଂଗ୍ରେସ କର୍ମୀଙ୍କ ମୃତ୍ୟୁ ହୋଇ ଯାଇଥିଲା । ବହୁ କଂଗ୍ରେସ କର୍ମୀ ଓ ସମର୍ଥକମାନଙ୍କଠାରୁ ଜିନିଷପତ୍ର ଲୁଟ କରା ଯାଇଥିଲା ।

ଜୟପୁର ଜମିଦାରଙ୍କ ଆର, ଆଇ, ଅନ୍ୟ କେତେକ କର୍ମଚାରୀଙ୍କ ସହ ପତ୍ତାଗଡ଼ କଂଗ୍ରେସ କର୍ମୀମାନଙ୍କଠାରୁ ଜିନିଷପତ୍ର ନେଇଥିଲେ କେତେକ ଲୋକ ମଧ୍ୟ ସେମାନଙ୍କୁ ସାହାଯ୍ୟ କରିଥିଲେ । କଂଗ୍ରେସ ସମର୍ଥକ ଓ କର୍ମୀଙ୍କଠାରୁ ପାଞ୍ଚଟଙ୍କା ଲେଖାଏଁ ଆଦାୟ କରାଯାଇ ବେତମାଡ଼ ଦିଆଯାଇଥିଲା । ଏହି ଘଟଣା ଘଟିବାର ଦୁଇ ସପ୍ତାହ ପରେ ବନ୍ଦିଗିରିର ଫରେଷ୍ଟର ଅନ୍ୟ ଜଣେ ଗାର୍ଡ ସହ ଏହି ଗ୍ରାମରେ ଆସି କଂଗ୍ରେସ କର୍ମୀଙ୍କୁ ଦଳ ଛାଡ଼ିବାକୁ ଧମକ ଦେଲେ । କଂଗ୍ରେସରେ ଥିଲେ ସେମାନଙ୍କ ମା' ଭଉଣୀଙ୍କୁ ଅତ୍ୟାଚାର କରାଯିବ ଓ ଲାଞ୍ଛନା ଦିଆଯିବ ବୋଲି ଧମକଚମକ ଦେଖାଇଥିଲେ ।

ଗୁମାଣ୍ଡଲା, ଗଣ୍ଡଗୁଡ଼ାର କଂଗ୍ରେସ କର୍ମୀମାନଙ୍କ ଜମିରେ ହାତୀ ଚଲାଇ ସରକାରୀ କର୍ମଚାରୀମାନଙ୍କ ଦ୍ୱାରା ଫସଲ ନଷ୍ଟ କରି ଦିଆଯାଇଥିଲା । ସମିଆ ଗାଡ଼ବା କଂଗ୍ରେସ କର୍ମୀଙ୍କୁ ଗାଁ ହାଣ୍ଡିରେ ଖଦଡ଼ କପଡ଼ା ପୋଡ଼ି ଦିଆ ଯାଇ

ଉଲଗ୍ନ କରିଗଲା । ତାଂକ ଘରକୁ ନିଆଁ ଲଗାଇ ପୋଡ଼ିଦିଆଗଲା । ଅନ୍ୟ କଂଗ୍ରେସ କର୍ମୀଙ୍କୁ କଂଗ୍ରେସ ଛାଡ଼ିବାକୁ ବହୁ ନିର୍ମମ ମାଡ଼ ଦିଆଯାଇଥିଲା ।

ଚନ୍ଦ୍ରାଣ୍ଡା, ଝଡ଼ଲ, ଗୌଡ଼ଗୁଡ଼ା, ମିଝାରବାଲ ପ୍ରଭୃତିଗ୍ରାମରେ କଂଗ୍ରେସ ନେତାଙ୍କ ଧନସମ୍ପତ୍ତି ଲୁଟ କରାଯାଇଥିଲା । ସେମାନଙ୍କୁ ଲଟିମାଡର ଶୀକାର ହେବାକୁ ହେଉଥିଲା ।

ଜୟପୁର ଥାନା—

ଜୋରବୁଟ ପୋଲିସ ସୁପରିଣ୍ଟେଣ୍ଡେଣ୍ଟ ଓ ଇନସ୍ପେକ୍ଟର ୧୦ ଜଣ ରିଜର୍ଭ ପୋଲିସ ସହ ଝାଙ୍କୁଆ ଯାଇ ହାଟରୁ କଂଗ୍ରେସ କର୍ମୀମାନଙ୍କୁ ଗିରଫ କରିଥିଲେ । ପରେ ସେମାନଙ୍କୁ ଜୟପୁର ଥାନାକୁ ଅଣାଯାଇ ମାଡ଼ ଦିଆଗଲା । ଗୋଟିଏ ଖୁଣ୍ଟକୁ ଦୁଇଜଣ ପିଛିବାକୁ ବାଧ୍ୟ କରାଯାଇ ଅବଶିଷ୍ଟ ସମସ୍ତ ଝଡ଼ଡ଼ ଲୁଗା ଚୋଡ଼ିଦିଆ ଯାଇଥିଲା । ଅଧିକାଂଶ କଂଗ୍ରେସ କର୍ମୀ ମାଡଖାଇ ଗୁରୁତର ଭାବେ ଆହତ ହୋଇଥିଲେ । ପରେ ୨୫ ଜଣ କଂଗ୍ରେସ କର୍ମୀଙ୍କୁ ଏକ ଟ୍ରକରେ ନିଆଯାଇ ଜଙ୍ଗଲ ମଧ୍ୟରେ ଜଣ ଜଣକୁ ଛାଡ଼ିଦିଆ ଯାଇଥିଲା । ଜୟପୁର ଥାନାର ପୋଲିସ କର୍ମଚାରୀମାନେ ବହୁ ଗ୍ରାମକୁ ଯାଇ କଂଗ୍ରେସ କର୍ମୀ ଓ ତାଙ୍କ ପରିବାର ଲୋକଙ୍କୁ ମାଡ଼ମାରିଥିଲେ । କେତେକ ମା'ଭଉଣୀଙ୍କ ସହ ପଶୁତୁଲ୍ୟ ବ୍ୟବହାର ପ୍ରଦର୍ଶନ କରିଥିଲେ ।

ଅସନା ଗାମର କମଳଲୋଚନ ନାୟକଙ୍କୁ ଥାନାକୁ ଅଣାଯାଇ ଲଙ୍ଗଳା କରାଗଲା । ଉଲଗ୍ନ ଅବସ୍ଥାରେ ବେତ ମାଡ଼ ଦିଆଗଲା । ତାଙ୍କୁ ୯ଟା ସମୟରେ ଉଲଗ୍ନ ଅବସ୍ଥା ରେ ବୁଲିପିବାକୁ ନିର୍ଦ୍ଦେଶ ଦିଆଯାଇଥିଲା ।

ଆନ୍ଦୋଳନ ଆରମ୍ଭରେ ଜୟପୁର ପୋଲିସ ଷ୍ଟେସନ ପୋଲିସ ଅତ୍ୟାଚାରର ମୁଖ୍ୟ ଦପ୍ତରଥିଲା । ବହୁ ସ୍ଥାନରୁ କଂଗ୍ରେସ ଲୋକଙ୍କୁ ଏଠାକୁ ଆଣି ଲାଠି, ବେନ୍ଟ ମାଡ଼ ଦିଆଯାଉଥିଲା । ଥାନାରେ ମାଡଖାଇ ରାମଚନ୍ଦ୍ର କୁଡ଼ ଓ କନ୍ଧମନ ବାଲିଆ ମୃତ୍ୟୁ ବରଣ କରିଥିଲେ ।

ବୋରିଗୁମ୍ମା ଓ ବ,ସିଙ୍ଗପୁର ଥାନା —

ଚଣ୍ଡ୍ରାଲହାଣ୍ଡାର କେଶବ ସିଂ ଓ ଅନ୍ୟ ତିନିଜଣ କଂଗ୍ରେସ କର୍ମୀଙ୍କୁ ଲାଠି ମାଡ଼ ଦିଆଯାଇ ପୋଲିସ ସବ୍-ଇନସ୍ପେକ୍ଟର ୧୫ଟଙ୍କା ଲେଖାଏ ଆଦାୟ କରିଥିଲେ ।

ଡେପଟିଅମ୍ବ ହାଟରେ ଶହେ ଜଣ କଂଗ୍ରେସ କର୍ମୀ ଆନ୍ଦୋଳନାତ୍ମକ କାର୍ଯ୍ୟରେ ଲିପ୍ତ ଥିବା ସମୟରେ ୧୮ ଜଣଙ୍କୁ ଗିରଫ କରାଯାଇଥିଲା । ସେମାନଙ୍କୁ କୋରାପୁଟ ନିଆଯାଇଥିଲା । ଜଣେ ଏସ୍.ପି ସେହି ଗିରଫ ହୋଇ ଥିବା କଂଗ୍ରେସ କର୍ମୀଙ୍କୁ ବେତମାଡ଼ ଦେଇଥିଲେ ।

ଲନ୍ଦପୋଡ଼ ଗ୍ରାମରେ ସାପ୍ତାହିକ ହାଟରେ ଅନୁଷ୍ଠିତ ଏକ କଂଗ୍ରେସ ସଭାରେ ଲକ୍ଷ୍ମଣ ବିଷୟୀ, ଠାକୁର ଦାସ ଓ ରଘୁନାଥ ସିଂ ଭାଷଣ ଦେଇଥିଲେ । ପୋଲିସ ସଭାସ୍ଥଳରେ ୯୯ ଜଣଙ୍କୁ ଗିରଫ କରି ବୋରିଗୁମ୍ମା ଥାନାକୁ ଆଣିଥିଲେ । ଗିରଫ ସମୟରେ କଲେକ୍ଟର ଓ ଏସ୍.ପି ମଧ୍ୟ ଉପସ୍ଥିତ ଥିଲେ । ଠାକୁର ଦାସ ଓ ରଘୁନାଥ ସିଂ ସମେତ ପାଞ୍ଚ ଜଣଙ୍କୁ କଂଗ୍ରେସ କର୍ମୀମାନଙ୍କ ସମ୍ମୁଖରେ ନିର୍ମମ ମାଡ଼ ଦିଆଯାଇଥିଲା ।

ମଝିଆ ଜଳଟସୁ ସନ୍ନିଗୁଡ଼ାର ଗୋରା ନାୟକ ନାମକ ଜଣେ କଂଗ୍ରେସ କର୍ମୀଙ୍କୁ ଗିରଫ କରାଯାଇ ବୋରିଗୁମ୍ମା ଥାନାରେ ଅଟକ ରଖା ଯାଇଥିଲା । ତାଙ୍କୁ ଦୁଇ ଦିନ ଉପବାସ ରଖାଯାଇ ଥାନା ହାଜତରେ ମାଡ଼ ଦିଆ ଯାଇଥିଲା ।

ମୁଖ୍ୟା ଗ୍ରାମର ଡମ୍ବୁରୁ ରନ୍ଧାରୀ କଂଗ୍ରେସ ପ୍ରଚାର ପାଇଁ ଭୂମପାଡ଼ ଗ୍ରାମକୁ ଯାଇଥିଲେ । ତାଙ୍କୁ ସବ୍-ଇନସ୍ପେକ୍ଟର ଗିରଫ କରି ଆଣିଥିଲେ । ବ,ସିଙ୍ଗପୁର ଥାନାରେ ଡମ୍ବୁରୁ ରନ୍ଧାରୀଙ୍କୁ ଗଣି ଗଣି ଶହେ ଥର ବେତ ପ୍ରହାର କରାଯାଇଥିଲା । ଥାନାରେ ତାଙ୍କ ଗୋଡରେ ବାନ୍ଧି ତଳେ ମୁଣ୍ଡ କରି ଝୁଲାଇ ଦିଆଯାଇଥିଲା । ତାଙ୍କ ବେକରେ ଗୋଟିଏ କାଠ ଚୌକି ମଧ୍ୟ ବନ୍ଧାଯାଇଥିଲା । ତାଙ୍କଠାରୁ ୧୦ଟଙ୍କା ଜରିମାନା ଆଦାୟ କରାଯାଇଥିଲା ।

ନୂଆଗାଁ ହାଟର ଜୟୁରାମ ନାମର, ବୃନ୍ଦାବନ ଓ ଜଗବନ୍ଧୁ ଦାସଙ୍କ ସମେତ ଅନ୍ୟ କେତେକ କଂଗ୍ରେସ କର୍ମୀଙ୍କୁ ଗିରଫ କରି ବୋରିଗୁମ୍ମା ଥାନାକୁ ନିଆଯାଇଥିଲା । ସେମାନଙ୍କୁ ସାତ ଦିନ ପର୍ଯ୍ୟନ୍ତ ଖାଇବାକୁ ଦିଆ ନଯାଇ ଥାନା ହାଜତରେ ଉଲଗ୍ନ ଅବସ୍ଥାରେ ରଖାଗଲା । ପ୍ରତ୍ୟେକ ଦିନ ମାଡ଼ ମାରି ସପ୍ତାହପରେ ଛାଡ଼ିଦିଆ ଯାଇ ଅବଶିଷ୍ଟ କଂଗ୍ରେସ ଲୋକଙ୍କୁ ଜେଲକୁ ପଠାଇ ଦିଆଗଲା ।

ଝିପିତ ଗୌଡ ନାମକ ଜଣେ କଂଗ୍ରେସ କର୍ମୀଙ୍କୁ ଡ, ସିଙ୍ଗପୁର ସବ୍-ଇନସ୍ପେକ୍ଟର କୃଷ୍ଣମୂର୍ତ୍ତୀ ନିର୍ମମ ମାଡ଼ଦେଇ ତାଙ୍କ ଘର ନିଆ ଲଗାଇ ପୋଡ଼ି ଦେଇଥିଲେ ।

କୋରାପୁଟ ଓ ପଟ୍ଟାଙ୍ଗୀ ଥାନା—

ରାଣୀଗଡ଼ର ମୁଖ୍ୟ କରଣୀ ପିତାମ୍ବର ଜେନେବା, ଠାକୁର ଦାସ ନାମକ ଜଣେ କଂଗ୍ରେସ କର୍ମୀଙ୍କୁ କଂଗ୍ରେସ ଛାଡ଼ିବାକୁ ଧମକ ଦେଇଥିଲେ । ସେ ମନାକରିବାରୁ ତାଙ୍କୁ ଥାନାକୁ ନିଆଗଲା । ଥାନାରେ ଠାକୁର ଦାସଙ୍କ ଦେହର ଶ୍ରେଣି ସ୍ଥାନ ଗୁଡ଼ିକରେ କାଠି ଦ୍ୱାରା ଦହାଳ କରାଯାଇଥିଲା ।

ପଟ୍ଟାଙ୍ଗୀ ଥାନାର ସବ୍-ଇନସ୍ପେକ୍ଟର କମ୍ବୋଦର ପଟ୍ଟନାୟକ ଏଅଞ୍ଚଳରେ କଂଗ୍ରେସ କର୍ମୀଙ୍କ ଉପରେ କଠୋର ଦମନ ଲୀଳା ଚଳାଇଥିଲେ । ରାଜକର୍ମଚାରୀମାନେ ତାଙ୍କ ହାତ ଗୁପ୍ତଚରଙ୍କ ଲକ୍ଷ ବିଭିନ୍ନ ଗ୍ରାମର କଂଗ୍ରେସ ଲୋକଙ୍କ ଧନସମ୍ପତ୍ତି ଲୁଟ କରିଥିଲେ । କଂଗ୍ରେସ ଅଫିସ ଗୁଡ଼ିକ ଭାଙ୍ଗିଦିଆ ଯାଇଥିଲା । ସବୁ ଗ୍ରାମରେ ଉଡ଼ୁଥିବା ଜାତୀୟ ପତାକା ପୋଡ଼ିଦିଆ ଯାଇଥିଲା ।

ନବରଙ୍ଗପୁର ଥାନା—

ସ୍ୱରାଜ ସଂଗ୍ରାମ ସମୟରେ ଏଠାରେ ଗୋଟିଏ ସବ୍ ଜେଲ ଥିଲା । ଅଗଷ୍ଟ ବିପ୍ଳବ ସମୟରେ ହାଇସ୍କୁଲକୁ ଏକ ଅସ୍ଥାୟୀ ଜେଲରେ ପରିଣତ କରାଯାଇଥିଲା । ସଂଗ୍ରାମୀମାନଙ୍କୁ ଗିରଫ କରାଯାଇ ଏହି ଜେଲରେ

ଅଣାଯିବା ସହେ ସେମାନଙ୍କ ପେଷ୍ଟ କଡ଼ା ବାଦଯାଇ କେବଳ ଗୋଟିଏ ଗାମୁଛା ପିନ୍ଧି ରହିବାକୁ ବାଧ୍ୟ କରାଯାଇଥିଲା । ୧୯୪୨ ଅଗଷ୍ଟରୁ ୧୯୪୩ ଜାନୁୟାରୀ ମାସଯାଏ ବନ୍ଦୀ ସଂଗ୍ରାମୀମାନଙ୍କୁ ଗୋଟିଏ ଲେଖାଏ ଗାମୁଛାରେ ଦିନ କାଟିବାକୁ ପଡ଼ିଥିଲା । ଶୀତ ଋତୁରେ ସଂଗ୍ରାମୀମାନେ ସିମେଣ୍ଟ ପିଣ୍ଡାରେ ଉଲଗ୍ନ ଅବସ୍ଥାରେ ଗାମୁଛା ଘୋଡ଼େଇ ଶୋଉଥିଲେ । ପ୍ରତ୍ୟେକ ଦିନ ସଂଗ୍ରାମୀମାନଙ୍କୁ ପଟେଖାରୁ ଗାଧୋଇବା ପାଇଁ ନେବା ସମୟରେ ପୋଲିସ ଦ୍ୱାରା ଅଦଭ୍ୟ ଭାଷାରେ ଗାଳି କରଯାଇ ବୁଟ ଓ ଲାଠିମାଡ଼ ଦିଆଯାଉଥିଲା । ସଂଗ୍ରାମୀମାନଙ୍କ ମୁଣ୍ଡର ବାଳ କାଟିବା ପାଇଁ ଦିଆଯାଇ ନଥିଲା । ଏହି ଜେଲରେ କେତେକ ସଂଗ୍ରାମୀଙ୍କ ମୃତ୍ୟୁ ମଧ୍ୟ ହୋଇଥିଲା ।

ଡ଼ାବୁଗାଁ ଓ ଉମରକୋଟ ଥାନା—

କଂଗ୍ରେସ ମୁଖ୍ୟ କର୍ମୀ ଓ ପ୍ରାଥମିକ କଂଗ୍ରେସ କମିଟିର ସମ୍ପାଦକ ରବସିଂ ମାଝୀଙ୍କ ବାଟିକେଡ଼ା ଗ୍ରାମକୁ ପୋଲିସ ଚଡ଼ାଉ କରି ଜିନିଷପତ୍ର ଲୁଟ କରିଥିଲେ । ସେଠାରେ ଥିବା କଂଗ୍ରେସ ଅଫିସର ସମସ୍ତ ଜିନିଷପତ୍ର ନଷ୍ଟକରି ଦିଆଯାଇଥିଲା । ଜାମ୍ବୁଗୁଡ଼ାର ମିଲ୍ଲମାଝୀଙ୍କ ଘରେ ପୋଲିସ କେତେକ ଦାଗୀଙ୍କ ସହ ପଶି ତାଙ୍କର ସମସ୍ତ ଜିନିଷପତ୍ର ନେଇ ଯାଇଥିଲେ । ରଙ୍ଗଗୁଡ଼ାର କାନ୍ଥୁ ମାଝୀଙ୍କୁ ପୋଲିସ ଗଛରେ ବାନ୍ଧି ଲାଠିମାଡ଼ ଦେଇଥିଲେ । ତାଙ୍କ ଗୃହରେ ରହି କାର୍ଯ୍ୟ କରୁଥିବା କଂଗ୍ରେସ କର୍ମୀଙ୍କ ଠିକଣା ପ୍ରକାଶ କରିବାକୁ ପୋଲିସ ଧମକ ଦେଖାଇ ବିଫଳ ହୋଇଥିଲେ ।

ପଲସଗାଁର କଂଗ୍ରେସ କର୍ମୀ ବଳରାମ କଲାରଙ୍କ ସମେତ ଅନ୍ୟ କଂଗ୍ରେସ କର୍ମୀମାନଙ୍କୁ ପୋଲିସ ଗାଁ ଭିତରେ ପଶି ୪ଦିନ ଧରି ଅତ୍ୟାଚାର ଚଳାଇଥିଲେ । ବହୁ ଲୋକଙ୍କୁ ମାଡ଼ ମାରି ଶେଷରେ ସେମାନଙ୍କ ଜିନିଷପତ୍ର ଲୁଟି ନେଇଥିଲେ ।

ରଜେନ୍ଦ୍ର, ଜଗନ୍ନାଥ, ଦାଡ଼ିଆନାମକ ୩ଜଣ ପୋଲିସ କନେଷ୍ଟେବଲ ଜମିଦାର କର୍ମଚାରୀଙ୍କ ସହ ବଳରାମ କଲାରଙ୍କ ସ୍ତ୍ରୀଙ୍କ ଉପରେ ବଳାତ୍କାର କରିଥିଲେ ।

ବଡାମଞ୍ଜାଳି ଗାଁର ୧୨ ଜଣ କଂଗ୍ରେସ କର୍ମୀଙ୍କୁ ପୋଲିସ ମଣ୍ଡଳୀ ଥାନାରେ ଗିରଫ କଲେ । ଧନଦାସ ଦ୍ୱିଜାଶ୍ର ଓ ଭଗବାନ ଗୌଡଙ୍କୁ ସଂଜ୍ଞାହୀନ ହେବା ପର୍ଯ୍ୟନ୍ତ ବାଡି ପ୍ରହାର କରାଯାଇଥିଲା । ସେମାନଙ୍କୁ ଥାନା ହାଜତରେ ଝାଡା ଖାଇବାକୁ ବାଧ୍ୟ କରାଯାଇ ରଖାଯାଇଥିଲା । ଏ ଘଟଣାର ଦଶ ଦିନ ପରେ ପୁଣି ପୋଲିସ ଆସି ଗାଁର କଂଗ୍ରେସ ଲୋକଙ୍କ ସମେତ ଅନ୍ୟମାନଙ୍କ ଉପରେ ଦମନଲୀଳା ଚଳାଇଲେ । ଯାହା ଫଳରେ ଭୟରେ ଲୋକେ ମଧ୍ୟ ପ୍ରଦେଶର ଦେଓଭୋଗ ଅଞ୍ଚଳକୁ ଗାଁ ଛାଡି ପଳାଇଯାଇଥିଲେ ।

ଝିଙ୍କିଆବଡାରେ ରଘୁନାଥ ଦାସ ନାମକ ଜଣେ ବାବାଜୀ ଥିଲେ । ସେ କଂଗ୍ରେସର ଜଣେ ଦୃଢ଼ ସମର୍ଥକ ଥିଲେ । ପୋଲିସ ଉକ୍ତ ବାବାଜୀଙ୍କୁ ପିମ୍ପୁଡି ଜମାହୋଇଥିବା ସ୍ଥାନରେ ବାନ୍ଧିଦେଇ ନଗାଟିଏ ସବ ରଖିଥିଲେ । କଂଗ୍ରେସର ସମର୍ଥନ ନକରିବାକୁ ଧମକ ଦେଇଥିଲେ ।

ଡାବୁଗାଁ ଅଞ୍ଚଳସ୍ଥ ମାନଗାଁରେ ପୋଲିସ ସବ୍ ଇନସ୍ପେକ୍ଟର କଂଗ୍ରେସ କର୍ମୀ ମୁକୁନ୍ଦ ନାୟକଙ୍କ ପରିବାରକୁ ହଇରାଣ କରୁଥିଲେ । କେତେକ ଡାକୁଙ୍କୁ ସାଙ୍ଗରେ ନେଇ ମୁକୁନ୍ଦ ନାୟକଙ୍କ ବାପାଙ୍କୁ ବନ୍ଧୁକ ଦେଖାଇ ଟଙ୍କା ଓ ଜିନିଷପତ୍ର ଲୁଟି ନେଇଥିଲେ ।

୨୧-୮-୪୨ ତାରିଖ ରାତ୍ର ସୌନାଗୁଡା ଗ୍ରାମକୁ ପୋଲିସ ଦଳ ଯାଇ କଂଗ୍ରେସ କର୍ମୀଙ୍କୁ ଖୋଜିବା ବାହାନାରେ ଗାଁର ସମସ୍ତ ଲୋକଙ୍କ ଘରେ ପଶି ତାଣ୍ଡବଲୀଳା ଚଳାଇଲେ । କଂଗ୍ରେସ କର୍ମୀଙ୍କ ବିଷୟ ସନ୍ଧାନ ସେମାନଙ୍କ ଠାରେଥିବା ସମସ୍ତ ଜିନିଷପତ୍ର ଉଠାଇ ନେଇଥିଲେ ।

ବୋରିଗୁମା ଓ କୋଟପାଡ ଥାନା—

ସାନଗୁମୁଣ୍ଡାର ମୁଖିଆ କଂଗ୍ରେସ ସମର୍ଥକ ଜମ୍ବୁ ମାଝିକୁ ମାଡ ଦେଇ ତାଙ୍କର ସମସ୍ତ ଜିନିଷପତ୍ର ନଷ୍ଟ କରି ଦେଇଥିଲେ । ହାଣ୍ଡିବେଡାକୁ ସବ୍ଇନସ୍ପେକ୍ଟର ୩୦ ଜଣ ଗାର୍ଡ ସହ ଯାଇ ଗାଁସାରା ଜୁଲୁମ ଚଳାଇଲେ । ବୋରିଗୁମା

ଥାନାର ସବ-ଇନିସ୍ପେକ୍ଟର ଉଣ୍ଡାଳଗୁଡ଼ାର କଂଗ୍ରେସକର୍ମୀ ଡାଶରଥି ଉଷାଙ୍କ ଘରରୁ ସୁନା, ଟଙ୍କା ଓ ଲୁଗାପଟା ନେଇଯାଇଥିଲେ। କାଣ୍ଡୁଗୁଡ଼ାର ସମସ୍ତ ଗ୍ରାମବାସୀଙ୍କୁ ପୋଲିସ ଲାଠିମାଡ଼ର ଶିକାର ହେବାକୁ ପଡ଼ିଥିଲା। ଉମୁରୁ ମାଝୀଙ୍କ ପରିବାରର ଲୋକଙ୍କୁ ନାନା ପ୍ରକାର ହଇରାଣ ହରକତ କରାଯାଇଥିଲା।

କଲପାଳ ପୋଲିସ ଓ କେତେକ ରାଜକର୍ମଚାରୀଙ୍କ ସହ ଫାଉଷା-ଗୁଡ଼ା ଯାଇ କଂଗ୍ରେସ କର୍ମୀ ଧନ ଦ୍ୱିଶାରୀଙ୍କ ସମସ୍ତ ଧନସମ୍ପତ୍ତି ଜବତ କରିଥିଲେ। ତାଙ୍କ ପରିବାର ଲୋକଙ୍କୁ ବାରମ୍ବାର ଅତ୍ୟାଚାର ଶିକାର ହେବାକୁ ପଡ଼ିଥିଲା।

ପୋଲିସ ସବ-ଇନସ୍ପେକ୍ଟର ଈଶ୍ୱର ନାୟକ କେତେକ ତାଗୀମାନଙ୍କ ସହ କଷାଗୁମୁଣ୍ଡାଗ୍ରାମର ଆଶୁଚୌଡ଼ ନାମକ ଜଣେକଂଗ୍ରେସ କର୍ମୀଘରେ ପଶି ଘର ଖାଲକରି ଦେଇଥିଲେ। ତାଙ୍କ ପରିବାର ଏପରିକ ଗ୍ଲେଟ ପିଲା ମଧ୍ୟ ପୋଲିସ ମାଡ଼ରୁ ରକ୍ଷାପାଇ ନଥିଲେ। କଣାଗୁଡ଼ାର କଂଗ୍ରେସ କର୍ମୀମାନେ ଜେଲ ଯିବାପରେ ସେମାନଙ୍କ ଧନ ସମ୍ପତ୍ତି ପୋଲିସ ଦ୍ୱାରା ଲୁଣ୍ଠିତ ହୋଇଥିଲା। ସରଗୁଡ଼ାଠାରେ ମଧ୍ୟ କଂଗ୍ରେସ କର୍ମୀମାନଙ୍କ ଉପରେ ପୋଲିସର ଅତ୍ୟାଚାର କମ ନଥିଲା।

ଚେଣ୍ଟୁଲଖୁଣ୍ଟି ଥାନା—

କଉଗୁଡ଼ାର କଳସମ ଦ୍ୱୀଧାଣି, ଚଇ ପ୍ରଧାନ ଜନ ଉଷାଙ୍କ ଜନଷ ଚାଷ ନେଇଯାଇଥିଲେ। ଦଡ଼ଣା ଗ୍ରାମର ଗୋବିନ୍ଦ ନାମକ ଜଣେ କର୍ମଚାରୀ କଂଗ୍ରେସ ଲୋକଙ୍କୁ ଆନ୍ଦୋଳନ ସମୟରେ ବହୁତ ହଇରାଣ କରିଥିଲେ। ଲୋକଙ୍କଠାରୁ ଜବରଦସ୍ତି ଟଙ୍କା ଛଡ଼ାଇନେଇ ସେ ପୋଡ଼ି ଦେଉଥିଲା।

ଭୁଟୁଞ୍ଜି ଗ୍ରାମର ସବୁ ପୂଜାରୀ ଜଣେ ଟାଣୁଆ ଓ ସାହାସୀ କଂଗ୍ରେସ କର୍ମୀଥିଲେ। ତାଙ୍କ ପରିବାର ଦୁଇଜଣ ବ୍ୟକ୍ତି ଶହୀଦ ହୋଇଛନ୍ତି। ଜଣଙ୍କର ପାଟଡ଼ାବାଣ୍ଡି ଗୁଳିରେ ଓ ଅନ୍ୟ ଜଣଙ୍କ କୋରାପୁଟ ଜେଲରେ

ମୃତ୍ୟୁ ହୋଇଥିବା । ପୋଲିସ ଦ୍ୱାରା ସେମାନଙ୍କ ଯାହା କିଛି ଧନସମ୍ପତ୍ତି ଥିଲା ତାହାକୁ ଲୁଟିନିଆ ଯାଇଥିଲା ।

ଢେଙ୍କାନାଳ ଥାନା ସବ୍-ଇନସ୍ପେକ୍ଟର ପାଟପୁଟ ଗ୍ରାମର ୧୨ଜଣ କଂଗ୍ରେସ କର୍ମୀଙ୍କ ଘରଉପରେ ଚଢ଼ାଉକରି ସମସ୍ତ ପ୍ରକାର ଅତ୍ୟାଚାର କରିଥିଲେ । ମଧୁ ବଣ୍ଡେଜନା ନାମକ ଜଣେ କଂଗ୍ରେସ କର୍ମୀ ପୋଲିସ ଅତ୍ୟାଚାର ସହ୍ୟ କରି ନପାରି ଆତ୍ମହତ୍ୟା କରିଥିଲେ ।

ଗୁଣୁପୁର--

୧୯୪୨ ଅଗଷ୍ଟ ବିପ୍ଳବରେ ଏହି ତହସିଲର ୨୮ ଜଣ ଗିରଫ ଥିଲେ । ଗୁଣୁପୁର କଂଗ୍ରେସ କମିଟିର ଅନୁଷ୍ଠାନରେ ବହୁ ମହିଳା ମଧ୍ୟ ଆନ୍ଦୋଳନ କରି ଜେଲ ଯାଇଥିଲେ । ବନ୍ଦୀମାନଙ୍କ ପ୍ରତି ଅମାନୁଷିକ ବ୍ୟବହାର ପ୍ରଦର୍ଶନ କରାଯାଇଥିଲା । ମହିଳା କଂଗ୍ରେସ କର୍ମୀମାନେ ବିଶେଷ ଭାବେ ଅତ୍ୟାଚାରିତ ହୋଇଥିଲେ ।

ଉପରବର୍ଣ୍ଣିତ ବିଭିନ୍ନ ସ୍ଥାନର ଛୋଟଛୋଟି ଘଟଣା ପୋଲିସ ଓ ରାଜକର୍ମଚାରୀଙ୍କ କଂଗ୍ରେସ ଲୋକଙ୍କ ଉପରେ ହୋଇଥିବା ଅତ୍ୟାଚାରର ସୂଚନା ମାତ୍ର । ଏଭଳି ଅନେକ ମର୍ମନ୍ତୁଦ ଘଟଣା ଅନେକ ସ୍ଥାନରେ ଘଟିଛି । ଯାହା ସମ୍ପୂର୍ଣ୍ଣ ଭାବେ ସଂଗୃହୀତ ହୋଇପାରିନାହିଁ । ଏହି ଅଧ୍ୟାୟରେ ବର୍ଣ୍ଣିତ ଘଟଣା କୋରାପୁଟିଆ ସ୍ୱାଧୀନତା ସଂଗ୍ରାମୀଙ୍କ ଉପରେ ବ୍ରିଟିଶ ସରକାରର ପାଳିତ କୁକୁର ମାନଂକ ଦମନ ଓ ଶୋଷଣର ଏକ ଅଂଶ ବିଶେଷ । ଯହିଁରୁ ସ୍ୱାଧୀନତା ସଂଗ୍ରାମ ସମୟରେ କଂଗ୍ରେସ ଲୋକଂକ ଉପରେ କିଭଳି ଅନ୍ୟାୟ, ଅତ୍ୟାଚାର, ଶୋଷଣ ଓ ଦମନ କରାଯାଇଥିଲା ଏବଂ ସଂଗ୍ରାମୀମାନେ ସେଗୁଡ଼ିକୁ ସହ୍ୟ କରି ଜନ୍ମଭୂମିର ସ୍ୱାଧୀନତା ପାଇଁ ଲଢେଇ କରିଥିଲେ, ଭାବିଲେ ଶିହରଣ ଉଠେ ।

ଅଗଷ୍ଟ ବିପ୍ଳବରେ କୋରାପୁଟ ଜିଲ୍ଲାର କଂଗ୍ରେସ ନେତା ଓ ମୁଖିଆ କଂଗ୍ରେସ କର୍ମୀମାନେ ଗିରଫ ହୋଇଗଲେ । ଯେଉଁ କେତେକ ଲୋକଙ୍କ ଦ୍ୱାରା ଗିରଫ ନହୋଇ ରହିଲେ, ସେମାନେ ଗୁପ୍ତଭାବେ କଂଗ୍ରେସର କାର୍ଯ୍ୟ ଚଳାଇଥିଲେ । କିନ୍ତୁ କଂଗ୍ରେସ ବେ-ଆଇନ ଘୋଷିତ ହୋଇ ଯାଇଥିବାରୁ ୩ବର୍ଷ ଯାଏ କଂଗ୍ରେସ ସେଭଳି ଆଖି ଦୃଶିଆ କାର୍ଯ୍ୟ କରିପାରିନଥିଲା । ମେ ସ୍ତ୍ର ଗ୍ରାମରୁ ଖାଜଣା ଟଙ୍କା ଉଠିବା ବନ୍ଦ ହୋଇଗଲା ।

କଂଗ୍ରେସ ନେତା ଓ ମୁଖ୍ୟ କର୍ମୀମାନଙ୍କ ଅନୁପସ୍ଥିତିର ସୁଯୋଗ ନେଇ ଉପଲେତ୍ତନଜାଷ୍ଟମାନେ ଗରିବ ଲୋକ-ଟିଆଙ୍କ ଉପରେ ପ୍ରତି ଅତ୍ୟାଚାର କରିବାକୁ ଲାଗିଲେ । ଏମେ ସଂଗ୍ରାମୀମାନେ ଜେଲଦଣ୍ଡ ଭୋଗି ଖଲାସ ହେଲେ । ୧୯୪୫ ମଧ୍ୟଭାଗରୁ ୧୯୪୬ ମସିହା ପର୍ଯ୍ୟନ୍ତ ଦେଢ଼ବର୍ଷ ଧରି କଂଗ୍ରେସ କର୍ମୀମାନେ କୋରାପୁଟ ଜିଲ୍ଲାରେ ବ୍ରିଟିଶ ସରକାର ଓ ରାଜକର୍ମଚାରୀ ମାନେ ଦମନ ଓ ଲୁଣ୍ଠନର ଯେଉଁ ତାଣ୍ଡବଲୀଳା ଚଳାଇଥିଲେ ତାହାର ବିବରଣୀ ସଂଗ୍ରହରେ ଲାଗିଥିଲେ ।

କୋରାପୁଟ ଜିଲ୍ଲା କଂଗ୍ରେସ କମିଟି ପକ୍ଷରୁ ଅନ୍ୟାୟ ଅତ୍ୟାଚାରର ବିବରଣୀ ସଂଗ୍ରହ କରାଯାଇ ସେଗୁଡ଼ିକୁ ସର୍ବସାଧାରଣରେ ପ୍ରକାଶ କରାଗଲା । ଅଗଷ୍ଟ ବିପ୍ଳବରେ କୋରାପୁଟ ଜିଲ୍ଲାରେ ଯେଉଁ ଦମନମୂଳକ କାର୍ଯ୍ୟ ବ୍ରିଟିଶ ସରକାରଙ୍କ ଦ୍ୱାରା କରାଯାଇଥିଲା ତାହା ସେ ପର୍ଯ୍ୟନ୍ତ ଲୁଚି ରହିଥିଲା । ସର୍ବ ପ୍ରଥମେ ବିଶ୍ୱନାଥ ଦାଶ ଜେଲରୁ ଖଲାସ ହେବାପରେ କୋରାପୁଟ ଜିଲ୍ଲା

ଜେଲରେ ୫୦ ଜଣ କଂଗ୍ରେସ ସଂଗ୍ରାମୀଙ୍କ ଅକାଳ ମୃତ୍ୟୁ ବରଣ କଥା ପ୍ରକାଶ କରିଥିଲେ । ଫଳରେ ଏହି ଜିଲ୍ଲାଟି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ଦମନ ନେଇ ବିଭିନ୍ନ ଘଟଣା କ୍ରମେ ପ୍ରକାଶିତ ହେବାକୁ ଲାଗିଲା ।

ଅଗଷ୍ଟ ବିପ୍ଳବରେ କୋରାପୁଟିଆଙ୍କ ଉପରେ କରାଯାଇଥିବା ଦମନ ଉପରେ ମନ୍ତବ୍ୟ ଦେବାକୁ ଯାଇ କଲିକତାରୁ ପ୍ରକାଶିତ ଦୈନିକ 'ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ' ୨୨-୧୦-୪୫ରେ ଲେଖିଥିଲେ—

"The ugly story of blood curdling atrocities committed by the Police in Koraput Dist of Orissa during the troublous days of 1942 are indeed shocking. Will the authorities make a through investigation of the charges lavelled against the police and other Jamidary officials and put the guilty men on trial."

ଓଡ଼ିଶାର ଏକମାତ୍ର ଜାତୀୟତାବାଦୀ ଇଂରାଜୀ "ନ୍ୟୁ ଓଡ଼ିଶା" ପ୍ରକାଶ କଲେ—

"In the district of Koraput during the historic day of August 1942 has come not a day too soon. Though Koraput Dist is generally taken to be closed mountains fortress, yet there can be no earthly reasons why three years should pass and scarcely any thing be known to what really happened there in those hectic days,"

ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ସଭାପତି ନବକୃଷ୍ଣ ଚୌଧୁରୀ କୋରାପୁଟ ଜିଲ୍ଲାରେ କରାଯାଇଥିବା ଦମନ ଓ ଲୁଣ୍ଠନର ବିସ୍ତୃତ ବିବରଣୀ ଖବର କାଗଜରେ ପ୍ରକାଶ କରିଦେଲେ । ଏହିପରି ବହୁ ଖବର କାଗଜରେ କୋରାପୁଟ ଜିଲ୍ଲାର ଦମନ କାହାଣୀ ପ୍ରକାଶିତ ହୋଇ ତାହା ସମସ୍ତଙ୍କ ଦୃଷ୍ଟି

ଆକର୍ଷଣ କରିଥିଲା । ବିଶ୍ୱାସବାବୁ ଏକ ଟ୍ରିବୁନାଲ ଗଠନ କରି ଦୋଷୀ ଲୋକଙ୍କୁ ଦଣ୍ଡ ଦେବାକୁ ଦାବୀକଲେ ।

ରାଧାକୃଷ୍ଣ ବିଶ୍ୱାସରାୟ ଓ ରାଧାମୋହନ ସାହୁଙ୍କ ଉଦ୍ୟମ ଫଳେ କୋରାପୁଟ ଜଲାର ବ୍ରିଟିଶ ଦମନର କାହାଣୀ ପ୍ରକାଶିତ ହେବା ପରେ "ନ୍ୟୁ ଓଡ଼ିଶା" ଲେଖିଲେ--

"It is out meet and proper that when such a definite charge sheet has been laid down The G vt. should immediately set up an impartial tribunal to enquire in the case and then award exemplary punishment to all the guilty persons how ever highly placed they may be. It is the bounden duty of every responsible Govt to come forward to institute enquires without losing any more time. If the provincial Authorities go on their usual way of sitting tight over all knotty problems th n the public of Orissa must take up the matter so that before all evidences and facts of these terrible atrocities are totally lost, they are carefully brought together and preserved to be used in future"

୧୯୪୫ ମସିହାରେ ଲୋକ ନାୟକ ଜୟପ୍ରକାଶ ନାରାୟଣ କୋରାପୁଟ ଜଲା ଗସ୍ତରେ ଆସି ଡାବୁଗାଁ ଥାନା ଅନ୍ତର୍ଗତ ବଜାପୁରଗ୍ରାମରେ ଅନୁଷ୍ଠିତ ସାଧାରଣ ସଭାରେ କହିଥିଲେ—

"ଭାରତ ବର୍ଷର ସ୍ୱାଧୀନତା ପାଇଁ କୋରାପୁଟ ଜଲାର ଅବଦାନ ବହୁ ଉଚ୍ଚରେ ରହିଛି । ଗାନ୍ଧୀ ନାମର ଅପୂର୍ବ ସାଫଲ୍ୟ ଏହି ଆଦିବାସୀ ଜଲାରେ ଦେଖିବାକୁ ମିଳିଥିଲା । ଗାନ୍ଧୀଜୀଙ୍କ ସ୍ୱରାଜ ଡାକରାରେ କୋରାପୁଟ

ଜିଲ୍ଲା ଯେଉଁ ଆତ୍ମବଳିଦାନ ଓ ତ୍ୟାଗର ପରାକାଷ୍ଠା ଦେଖାଇଥିଲା ତାହା ଅନ୍ୟତ୍ର ଦେଖିବାକୁ ମିଳେନାହିଁ ।"

୧୯୫୫ ମସିହା ସେପ୍ଟେମ୍ବର ମାସରେ ସନ୍ଥ ବିନୋବା ପଦ-ଯାତ୍ରାରେ କୋରାପୁଟ ବୁଲି ଜେନୁଲକ୍ଷ୍ମୀ ଥାଆର ବଞ୍ଜିଗୁଡାଠାରେ ଅନୁଷ୍ଠିତ ସାଧାରଣ ସଭାରେ କହିଥିଲେ—

"ମୁଁ ସାରା ଭାରତ ଓ ଓଡ଼ିଶାରେ ୧୩ମାସ ପଦଯାତ୍ରାକରି ସମସ୍ତ ଅଞ୍ଚଳ ବୁଲି ଦେଖିଛି । କୋରାପୁଟ ଜିଲ୍ଲା ବୁଲିବା ପରେ ଆଜ ମୁଁ ଅନୁଭବ କରୁଛି ଯେ; ଦେଶ ପାଇଁ ଏହି କୋରାପୁଟ ଜିଲ୍ଲା ବିଶେଷ କରି ନବରଙ୍ଗପୁର ଅଞ୍ଚଳର ଅବଦାନ ସର୍ବାଧିକ ହୋଇଛି । ଗାନ୍ଧୀ କାମ ପ୍ରକୃତରେ କୋରାପୁଟ ଜିଲ୍ଲାରେ ହିଁ ଭଲରୂପେ ହୋଇ ପାରିଛି । ଏ ଜାତିର ସ୍ୱାଧୀନତା ପାଇଁ ଏ ଅଞ୍ଚଳ ହିଁ ଅତୁଳନୀୟ ବଳିଦାନ ଓ ତ୍ୟାଗର ନିଦର୍ଶନ ଦେଖାଇ ପାରିଛି ।"

୯-୧୨-୧୯୪୭ ତାରିଖରେ ନବରଙ୍ଗପୁର ହାଇସ୍କୁଲ ପଡ଼ିଆ ଠାରେ ଅନୁଷ୍ଠିତ ସାଧାରଣ ସଭାରେ ଭାଷଣ ଦେଇ ପଣ୍ଡିତ ଲିଙ୍ଗରାଜ ମିଶ୍ର କୋରାପୁଟିଆଙ୍କ ସ୍ୱରାଜ ସଂଗ୍ରାମ ନେଇ କହିଥିଲେ—

"କୋରାପୁଟ ଜିଲ୍ଲାର ସ୍ୱରାଜ ସଂଗ୍ରାମ ଅତୁଳନୀୟ । ଅଗଷ୍ଟ ବିପ୍ଳବରେ କୋରାପୁଟ ଜିଲ୍ଲାର କଂଗ୍ରେସ ଯେଉଁ ଆନ୍ଦୋଳନ କରିଥିଲା ସେପରି ଓଡ଼ିଶାର ଅନ୍ୟତ୍ର କୌଣସି ଜିଲ୍ଲାରେ ହୋଇନଥିଲା । ପୋଲିସ ଓ ସରକାରୀକର୍ମଚାରୀମାନେ କଂଗ୍ରେସକର୍ମୀଙ୍କ ଉପରେ ଯେଉଁ ଲୁଣ୍ଠନ ଓ ଦମନଚକ୍ର ଚଳାଇଥିଲେ ସେପରି ଅନ୍ୟତ୍ର ଘଟିନଥିଲା । ତେଣୁ କୋରାପୁଟ ଗୋଟିଏ ପଛୁଆ ଜିଲ୍ଲା ବୋଲି ମୁଁ ବିଶ୍ୱାସ କରିପାରୁନାହିଁ । କୋରାପୁଟ ଜିଲ୍ଲା ବିଶେଷକରି ନବରଙ୍ଗପୁର ଅଞ୍ଚଳର ସଂଗ୍ରାମୀମାନେ ଯେଉଁ ତ୍ୟାଗ ସ୍ୱୀକାର କରି ଆନ୍ଦୋଳନ କରିଥିଲେ ତାହା ଅନ୍ୟାନ୍ୟ ଜିଲ୍ଲା ଅପେକ୍ଷା ବହୁ ଉଚ୍ଚରେ ରହିଛି । ଏଠାର ବହୁ କଂଗ୍ରେସ କର୍ମୀ ଦେଶ ସ୍ୱାଧୀନ ପାଇଁ ଶହୀଦ ହୋଇଛନ୍ତି, ଜେଲ ଯାଇଛନ୍ତି । ତେଣୁ ମୁଁ ଆପଣମାନଙ୍କୁ ନମସ୍କାର କରୁଅଛି । ଆପଣମାନେ ଧନ୍ୟ ।"

ବହୁଦୀର୍ଘ ସମୟ ମଧ୍ୟ କୋରାପୁଟ ଜିଲ୍ଲାରେ ଘଟିଥିବା ଅମାନୁଷିକ ଅତ୍ୟାଚାରର କୌଣସି ପ୍ରତିକାର ହେଉନାହିଁ । ଦୋଷୀମାନେ ଦଣ୍ଡ ପାଉନାହାନ୍ତି । ତା'ବଦଳରେ ବ୍ରିଟିଶ ସରକାର ପକ୍ଷରୁ ପୁରସ୍କୃତ ହେବା ପ୍ରକାଶପାଇଛି

Sir Tottenhamଙ୍କ ଦ୍ୱାରା ରଚିତ "Congress Responsibilities for Disturbances of 1942" ନାମକ ବ୍ରିଟିଶ ସରକାର ଦ୍ୱାରା ପ୍ରକାଶିତ ହୋଇଥିଲା । ଏହା ଦେଶ ଓ ବିଦେଶରେ ବହୁଳ ଭାବେ ପ୍ରଚାରିତ ହେଲା । ଏଥିରେ କୋରାପୁଟ ସ୍ୱରାଜ ସଂଗ୍ରାମ ବିଷୟରେ Sir Tottenham ଏକ ଅବାଞ୍ଛିତ ମନ୍ତବ୍ୟ ଦେଇ ଲେଖିଛନ୍ତି—

"An account of the movement in the backward hill district of Koraput in Orissa is interesting. The Congress had built up an organisation and acquired a hold over these backward tribes by making attractive promises that when 'Swaraj' come there would be no rents and taxes and no forest laws. They also played on their superstition and in some areas Mr. Gandhi was defied and temple ritual took place at the congress office On receiving instructions from the Dist Congress Committee the subordinate workers rapidly passed the word round that—'The British Raj' was no more and that police station should be attacked. Violent disorder took place for a few days, but the local authorities got the situation in hand and as the movement had been based entirely on false promises its collapse was as rapid as its rise"

